ମଧୁମୟୀ ମା !

କେତୋଟି କ୍ଷୁଦ୍ର ଗଳ୍ପର ସମାବେଶ

ଏହି 'ଅବ୍ୟକ୍ତ'ଟି ତୁମର ଚରଣ

କମଳରେ ଅର୍ପଣ କଲି ।

ସ୍ନେହଲତା

ବୋଉ !

ମୋତେ ମଣିଷ କରିବା ପାଇଁ ସମାଜର ହାତରେ ତୁ କେତେ କଷ୍ଟ, କେତେ ନିର୍ଯ୍ୟାତନା ନ ଭୋଗିଛୁ, କେତେ ଲୁହ ନ ବୁହାଇଛୁ ! ଆଜି ତୋର ଦୁଃଖ ତୁ ଗାଇ ଲଗିଥିଲୁ ଠାକୁରଙ୍କ ନିକଟରେ ତୋର ନିଜ ଲେଖା 'ଜଣାଣ' ମାଧ୍ୟମରେ—ସତ୍ତ୍ୱ ବାହାର ଦୁନିଆ ଆଗରେ ତୋର ଦରଦର ବହୁ ଅଂଶ ରହିଥିଲା—ଅବ୍ୟକ୍ତ ।

ସେହିପରି ଅବ୍ୟକ୍ତ ଭାବନାରୁ କେତେକକୁ ରୂପ ଦେଇ ମୁଁ ତୋର ସ୍ମୃତିର ତର୍ପଣ କରୁଛି ।

ତୋର **'ସାନଝିଅ'**

# ଅଭିମତ

ଶ୍ରୀମତୀ ସ୍ନେହଲତା ମହାପାତ୍ରଙ୍କ ରଚିତ 'ଅବ୍ୟକ୍ତ' 'ଆଶ୍ୱାସନା' 'ପିଲୁ', 'ଅନ୍ତରାଳେ', 'ଅସମାପିକା', 'ପୋଖରୀ ଭିତରେ ଘୋଡ଼ାଦିଆ', 'ପିଠା', 'ଅଲକ୍ଷ୍ୟରେ' ଓ 'ଝଡ଼ରଶେଷ' ପ୍ରଭୃତି ଗଳ୍ପ ପାଠ କରି ବିଶେଷ ଆନନ୍ଦ ଓ ତୃପ୍ତି ଲାଭକଲି । ଗଳ୍ପଗୁଡ଼ିକରେ ଲେଖିକାଙ୍କର ଗଭୀର ଅନୁଭୂତି ଓ ଅନ୍ତର୍ଦୃଷ୍ଟି ପ୍ରକଟିତ ହୋଇଅଛି । ଆଧୁନିକା ହେଲେ ମଧ୍ୟ ଚିହ୍ନଣ ଗୃହଭୂମିରେ ପ୍ରବୀଣତା ଲାଭ କରିବାର ଗୌରବ ସେ ଅର୍ଜନ କରି ଅଛନ୍ତି । ଅଧିକାଂଶ ଗଳ୍ପ ସାମାଜିକ ତଥା ପାରିବାରିକ ଜୀବନ ଉପରେ ହିଁ ଆଧାରିତ । ପ୍ରକାଶ ଭଙ୍ଗୀରେ ଲେଖିକାଙ୍କର ସ୍ୱକୀୟ ଆଦର୍ଶର ପରିଚୟ ମିଳେ । ଲେଟିକା ପଲ୍ଲୀ ପ୍ରକୃତି ଓ ଜୀବନର ଚିତ୍ର ଦେବାକୁ ଯାଇ ପଲ୍ଲୀଜୀବନର ସୁଖ ଦୁଃଖ, ଆଶା ନିରାଶା, ଆନନ୍ଦ ବେଦନା ଓ ଜୀବନ ଯନ୍ତ୍ରଣାକୁ ଅତିସୁନ୍ଦର ଭାବରେ ପରିସ୍ଫୁଟ କରି-ଅଛନ୍ତି । ବହୁ ସ୍ଥଳରେ ଲେଖିକାଙ୍କର ପ୍ରକାଶ ଭଙ୍ଗୀରେ ମନନଶୀଳତା ପରିଲକ୍ଷିତ, ଭାଷାରେ ସଂଯମ ଓ ସୌକୁମାର୍ଯ୍ୟ ସର୍ବତ୍ର ବିରାଜିତ । ଚରିତ୍ରମାନଙ୍କର ବିପର୍ଯ୍ୟୟ ପ୍ରତି ସେ ଯେତିକି ସମ୍ବେଦନଶୀଳା ସେମାନଙ୍କର ସାଫଲ୍ୟରେ ସେହିପରି ଉତ୍‌ଫୁଲ୍ଲମନା । ଗଳ୍ପ ଗୁଡ଼ିକର ସ୍ୱର ଅନେକ ସମୟରେ କ୍ଷୀଣ ହେଲେ ମଧ୍ୟ ତାହା କରୁଣ ଓ ଅଶ୍ରୁଳ । କେଉଁଠାରେ କାହାପ୍ରତି ତାଙ୍କର ବିଦ୍ରୂପ ନାହିଁ, ବିଦ୍ୱେଷ ନାହିଁ; ଅଥଚ ସମସ୍ତଙ୍କ ପ୍ରତି ତାଙ୍କର ଅଶେଷ ସହାନୁଭୂତି ଓ ସମବେଦନା ଲକ୍ଷଣୀୟ । ଲେଖିକାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ମୁଁ ଦେଖିପାରୁଛି । ଅନୁଭୂତିର ଗଭୀରତା, ଜୀବନଚର୍ଯ୍ୟା, ଓ ଚରିତ୍ର ଚିତ୍ରଣ ଦକ୍ଷତା ତାଙ୍କର ବିଶେଷତ୍ୱ । ସାଧନା ପଥରେ ସେ ଯେ ଅବଶ୍ୟ ସିଦ୍ଧିଲାଭ କରିବେ ଏଥିରେ ଆଉ ସନ୍ଦେହ ନାହିଁ । ମୁଁ ତାଙ୍କର ସଫଳତା କାମନା କରୁଛି ।

**ଡକ୍‌ଟର କାହ୍ନୁଚରଣ ମିଶ୍ର**

ତା ୧୮ । ୬ । ୭୭

ଓଁ ନମୋ ସାଇରାମାୟ୍,

ଶ୍ରୀମତୀ ସ୍ନେହଲତା ମହାପାତ୍ରଙ୍କ ଲିଖିତ ଗଳ୍ପଗୁଚ୍ଛ ପାଣ୍ଡୁଲିପିଟି ପାଠ କରି ମୁଁ ମୁଗ୍ଧ ହୋଇଛି । ଏଥିରେ ବହୁ ସାମାଜିକ ଓ ମାନସ୍ତାତ୍ତ୍ୱିକ ବିଶ୍ଳେଷଣ ସମ୍ବଳିତ କ୍ଷୁଦ୍ରଗଳ୍ପ ମାଧ୍ୟମରେ ମଣିଷ ଜୀବନର ସ୍ପଷ୍ଟ ଚିତ୍ର ଅଙ୍କିତ ହୋଇଅଛି । ରାଜନୀତିକ-ସମାଜ ବିଜ୍ଞାନର ବହୁ ତଥ୍ୟ ଏହି ପୁସ୍ତକରେ ନିଖୁଣ ଭାବରେ ବିଚରଣ କରାଯାଇଛି ଅତି ସରଳ କ୍ଷୁଦ୍ର ଗଳ୍ପ ଜରିଆରେ । ଲେଖିକାଂକ ବଳିଷ୍ଠ ଲେଖନୀ ପ୍ରସୂତ ଚିନ୍ତାଧାରା ଆଧୁନିକ ଜୀବନ ପ୍ରଣାଳୀ ଉପରେ ଯେ ପ୍ରଭାବ ପକାଇବ ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟର କଳେବର ସୃଷ୍ଟି କରିବାରେ ଲେଖିକାଙ୍କର ଅବଦାନ ଅବ୍ୟାହତ ରହୁ ଏହାହିଁ କାମନା ।

ଇତି ଜୟ ସାଇ ଜଗନ୍ନାଥ

ଡ଼କ୍ଟର ଭ୍ରମରବର ଜେନା
୨୨-୩-୭୬

# ପଦେଅଧେ

ଉଦ୍ଭଟାର ଖାଡଗରେ, ପରିସ୍ଥିତିର ଗୃପରେ, ସ୍ୱଭାବର ସୀମା ଭିତରେ ମଣିଷ କଥା କହେ, ଆଚରଣ କରେ, ଯାହା ତାହାର ଅନ୍ତରର ଠିକ୍ ପ୍ରତିଫଳନ ନୁହେଁ । ମଣିଷ ଭିତରେ ବହୁ କିଛି ରହିଥାଏ ଅବ୍ୟକ୍ତ ଏବଂ ଅନ୍ୟମାନେ ତାର କାର୍ଯ୍ୟଧାରାକୁ ବୁଝିଥାନ୍ତି ଭୁଲ୍ ଭାବରେ । ସମାଜରେ ଏହି ପ୍ରକାର ବିଭିନ୍ନ ପରିସ୍ଥିତିକୁ ନେଇ କ୍ଷୁଦ୍ରଗଳ୍ପର ରୂପ ଦେବାକୁ ମୁଁ ଚେଷ୍ଟା କରିଥିଲି । ସେହି ଗୁଡ଼ିକ ପ୍ରଜାତନ୍ତ୍ର, ନବପତ୍ର, ଆସନ୍ତାକାଲି, ଝଙ୍କାର ଇତ୍ୟାଦି କେତେକ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା ।

ସାମ୍ବାଦିକ ସ୍ୱାମୀ ଶ୍ରୀ ଚିନ୍ତାମଣି ମହାପାତ୍ରଙ୍କର ସାହାଯ୍ୟ ଓ ପରାମର୍ଶ ବିନା ଏଗୁଡ଼ିକର ରଚନା ବା ପ୍ରକାଶନ ସମ୍ଭବ ହୋଇପାରି ନାହିଁ । ଗଳ୍ପଗୁଡ଼ିକୁ ତାଙ୍କର ମନୋମତ କରାଇବା ମୋ ପକ୍ଷରେ ଥିଲା ଦୁଃସାଧ୍ୟ । ମୁଁ ବ୍ୟଥିତ ହୁଏ, କିନ୍ତୁ ପରେ ବୁଝିପାରେ ତାଙ୍କର ପରାମର୍ଶର ଯଥାର୍ଥତା ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର କାହ୍ନୁଚରଣ ମିଶ୍ର ଏବଂ ରାଜନୀତି ବିଜ୍ଞାନବିଭାଗରେ ମୁଖ୍ୟ ଅଧ୍ୟାପକ ଡକ୍ଟର ଭ୍ରମରବର ଜେନା ଏହି ଗଳ୍ପଗୁଡ଼ିକ ପଢ଼ି ଅଭିମତ ଦେଇଥିବା ହେତୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ଏ ବିଗରେ ଅନ୍ୟମାନଙ୍କ ମଧ୍ୟରେ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା, ଶ୍ରୀ ଭଗୀରଥି ନେପାକ, ଶ୍ରୀ ବସନ୍ତ କୁମାର ପାଣିଗ୍ରାହି, ଶ୍ରୀମତୀ ନର୍ମଦା ପାତ୍ରୀ ଓ ମୋ ଭାଇମାନେ ମୋତେ ଉତ୍ସାହିତ କରିଥିବା ହେତୁ ମୁଁ ତାଙ୍କ ନିକଟରେ ମଧ୍ୟ ମୋର କୃତଜ୍ଞତା ଜଣାଉଛି ।

ଗଳ୍ପଗୁଡ଼ିକ ପଢ଼ି ପାଠକ ପାଠିକାଗଣ ଯଦି କିଛି ଭାବଗତ ସ୍ୱାଦ ଆହରଣ କରି ପାରନ୍ତି, ତେବେ ମୋର ଉଦ୍ୟମ ସାର୍ଥକ ହେଲା ବୋଲି ମୁଁ ମନେ କରିବି ।

ସ୍ନେହଲତା ମହାପାତ୍ର

# ସୂଚୀପତ୍ର

# ଅବ୍ୟକ୍ତ

ବିସ୍ତର ଗତରାତିରୁ ମୋ ମସ୍ତିଷ୍କର ସ୍ନାୟୁଗୁଡ଼ିକର ଚଢ ଥିଲା ଦ୍ରୁତତର । ମୁଁ ଅନୁଭବ କରୁଥିଲି ଅପର୍ଯ୍ୟାପ୍ତ ଜଳକଣା ମୋ ଆଖି ଆଗରେ ଜ୍ମାଇ ହୋଇଯାଇଛି । ବସ୍ ନୁହେଁ—ଟ୍ରୁଥ୍ୱାଟା ଯେପରି ଲକ୍ଷ୍ୟହୀନ ଭାବରେ ଛୁଟି ଚାଲିଥିଲା । ହୃଦୟର କେଉଁ ଗହ୍ୱର ଭିତରେ ବେଦନା-ମଥିତ ତରଙ୍ଗ ଘାଡ଼ିଏ ଖାଉଥିଲା ।

ମୁନା ଅନେକ ବେଳୁ କୋଳରେ ଶୋଇ ଯାଇଛି । ନିଦ୍ରାଳୁ ଆଖି କୋଣରୁ ବୋହି ଆସିଥିବା ଲୁହ କେତେବେଳେ ଶୁଖି ଆସିଲାଣି । ସେ ହୁଏତ ସ୍ୱପ୍ନ ଦେଖୁଛି ଟୁଲୁ, ବୁଲୁ, ଲିଲି, କୁଲୁ ସମସ୍ତେ ଠିଆ ହୋଇଛନ୍ତି । ନାଲି, ନୀଳ ସ୍ୱେଟର୍, ଟୋପି, ମୋଜା, ଜୋତା ପିନ୍ଧି ହସୁଛନ୍ତି । ଆଉ ତା'ର ଆଖି ଆଗରେ ଝୁଲୁଛି ଅସଂଖ୍ୟ ରଙ୍ଗୀନ ସ୍ୱେଟର୍ । ଶୀତରେ ଥରୁଥିବା ନୀଳ ଆଙ୍ଗୁଠିଗୁଡ଼ିକ ବଢ଼ାଇ ସେ ସେଗୁଡ଼ିକୁ ଟାଣି ନେବା ପାଇଁ ବିଫଳ ଚେଷ୍ଟା କରୁଛି ।

ମୁଁ ତାକୁ ଆହୁରି ଟିକିଏ ଛାତି ପାଖକୁ ଟାଣି ନେଇ ଟିକିଏ ଦୁଇ ଖଣ୍ଡି ଲେଉଟାଇବାରେ ଲାଗିଲି । କେତେ ସ୍ନେହ, କେତେ ମମତା ଭରି ରହିଥିଲା ସେ ଛୋଟିଆ କାଗଜଗୁଡ଼ିକରେ !—ମୋ ଆଖି ଆଗରେ ଭାସି ଆସୁଥିଲା ବିଗତ ଯନ୍ତ୍ରଣାମୟ ଦିନଗୁଡ଼ିକ !

ଦରିଦ୍ରତାର ରୂପ ନେଇ ବାପ ଘରକୁ ଯିବା କେତେଦୂର ଯଥାର୍ଥ, ଏହି ବିଷୟରେ ଯୁକ୍ତିତର୍କ ଫଳରେ ବହୁଦିନ ଧରି ମୁଁ ଭାଇଙ୍କ ପାଖକୁ ଯାଇପାରି ନ ଥିଲି । ଭାଇ ମଧ୍ୟ ବିରକ୍ତ ହୋଇ ଆମ ଘରକୁ ଯିବା ଆସିବା ପ୍ରାୟ ବନ୍ଦ

କରି ଦେଉଥିଲେ । ଦୁଇଟି ପରିବାର ଭିତରେ ଅଯଥା ତିକ୍ତ ମନୋଭାବ ସୃଷ୍ଟି ହୋଇଥିଲା ।

ଝିଅ ଜୀବନରେ ବାପ ଘରର ଆକର୍ଷଣ ଏଡ଼ିବା କଷ୍ଟକର । ବହୁ ଦିନରୁ ବୋଉ ମରିଯାଇଥିଲା । ବାପା ଅତିଶୟ ବୁଢ଼ା ହୋଇ ଯାଇଥିଲେ । ତାଙ୍କ ଶରୀର ଅସୁସ୍ଥ ଥିବା ଖବର ପାଇ ମୁଁ ବ୍ୟସ୍ତ ହୋଇ ପଡ଼ିଲି । ବହୁ ବାଦାନୁବାଦ ଏବଂ ଅନୁରୋଧ ପରେ ଇଏ ମତେ ଯିବାଆସିବା ବାଟ ଖର୍ଚ୍ଚ ଏବଂ କିଛି କୋରି ଓ ଫଳ ଦେଇ ଭୁବନେଶ୍ୱର—ରାଉରକେଲା ବସ୍‌ରେ ବସାଇ ଦେଲେ । ଆଗରୁ ଚିଠି ଦେଇଥିବା ସତ୍ତ୍ୱେ ଭାଇ ବସ୍-ଷ୍ଟାଣ୍ଡକୁ ଆସି ନ ଥିଲେ । ତାଙ୍କର ଚାକର ଆସିଥିଲା । କିନ୍ତୁ ଘରେ ମୁଁ ପହଞ୍ଚିବା ପରେ ଭାଇ ଭାରି ଖୁସୀ ହୋଇ ଯାଇଥିଲେ । ଭାଉଜ ମଧ୍ୟ ମତେ ଆନନ୍ଦରେ କୁଣ୍ଢାଇ ପକାଇଲେ । ମୁନା ଲାଜ ଲାଜ ହୋଇ ମାମୁଙ୍କ କୋଳରେ ବସି ହସୁଥିଲା । ଚାରିଜଣ ଝିଆରୀ ପୁତୁରା ମୋ ଚାରିପଟେ ଘେରି ଯାଇଥିଲେ । ବହୁ ବର୍ଷ ଧରି ସେମାନଙ୍କୁ ଦେଖିବାର ସୌଭାଗ୍ୟ ମୋର ନ ଥିଲା । କେବଳ ବଡ଼ ପୁତୁରା ବୁଲୁ ଟିକୁ ମୁଁ ଛୋଟ ବେଳେ ଦେଖିଥିଲି । ଆଃ ! କି ମମତାଭରା ଏ ମୁହଁଗୁଡ଼ିକ !! ଛୋଟ ଝିଅ ଲିଲିଟିକୁ କୋଳକୁ ଉଠାଇ ମୁଁ ସବୁ ପିଲାଙ୍କ ମୁହଁକୁ ଆପୁଡ଼ାଇବାରେ ଲାଗିଲି ।

"ଆରେ ମା' କେତେବେଳେ ଆସିଲୁ ?"—ବାପାଙ୍କର ଥର ଥର ହାତ ଭିତରେ କେତେ ଯେ ମମତା ଭରି ରହିଥିଲା—ସେ ମୋତେ ଆଉଁସି ଦେଇ କହିଲେ—

"ବୁଢ଼ା ବାପଟାକୁ ଭୁଲିଗଲୁ କିରେ ମା'—ଏତେ ଦିନରେ ଆସିଲୁ ?" ମୁନାକୁ ଆଦରର ସହିତ ଆପୁଡ଼ାଇ ପଚାରିଲେ – "ଆଉ ପିଲାମାନେ କୁଆଡ଼େ ଗଲେ ?"

କଣ୍ଠ ମୋର ବନ୍ଦ ହୋଇ ଆସୁଥିଲା । ଭାବୁଥିଲି—ଅତୀତରେ ବାପାଙ୍କର ଅସରନ୍ତି ସ୍ନେହଭରା ଡାକ—ବୋଉର ହସ ହସ ମୁହଁ, ଭାଇ-

ଭଉଣୀଙ୍କର କୋଳାହଳ ! ମୁଁ ଯେ ତୃତୀୟ ସନ୍ତାନର ଜନନୀ, ଏହି ଧାରଣା ମୋ ମନରେ ସ୍ଥାନ ପାଉ ନ ଥିଲା । ମୁଁ ଯେମିତି ବହୁତ ଛୋଟ ହୋଇ ଯାଇଛି ଏବଂ ବାପାଙ୍କ ପାଖରେ ବସି କାନ୍ଦୁଛି । —ବାପା ମୋ ଆଖିରୁ ବାରମ୍ବାର ଲୁହ ପୋଛି ଲାଗିଲେ ।

"କଣ ଆଣିଛୁ ?— ପରିସ୍ଥିତିକୁ ସଜାଡ଼ି ନେବା ପାଇଁ ସେ ପଚାରିଲେ ଏବଂ ମୁଁ ଆଣିଥିବା ଫଳ ଓ କୋରା ତାଙ୍କ ପାଟିରେ ଦେବା ପାଇଁ ସେ ନିର୍ଦ୍ଦେଶ ଦେଲେ । ନିକଟରେ ଅନେକ ଦାମିକା ଫଳ ଥିବା ସତ୍ତ୍ୱେ ମୁଁ ଆଣିଥିବା କୋରା ଓ ଫଳଗୁଡ଼ିକ କିପରି ସେ ଆଗ୍ରହର ସହିତ ଖାଉଥିଲେ—ମୁ ତନ୍ମୟ ହୋଇ ତାହା ଦେଖୁଥିଲି ।

ବାପା କହୁଥିଲେ, "ଏ ଗନ୍ଧ ମତେ ଭଲ ଲାଗୁନାହିଁ ମା'; ବୋଉ-ଥିଲାବେଳେ ଦଉଡ଼ିଆ ଖଟ ବେଶ୍ ଭଲ ଥିଲା !" ମୁଁ ଘରର ସବୁ ଆଡେ ଆଖି ବୁଲାଇ ଆଣିଲି—ଆମର ସେ ପରିଚିତ ଛପର ଘର ବଦଳରେ ଚୂନ-ଧଳା କୋଠା ଠିଆ ହୋଇଛି । ମାଟି ଅଗଣା ଉପରେ ସିମେଣ୍ଟର ପଲସ୍ତରା । ଆମ ଘରର ସେ ପରିଚିତ ବୁଢ଼ା ଆମ୍ବ ଗଛଟା ଆଉ ନାହିଁ—ମାଟି କୁଣ୍ଡରେ ଅସଂଖ୍ୟ ଫୁଲ ଗଛ ।—ଦଉଡ଼ିଆ ଖଟ ବଦଳରେ ଡନ୍ ଲପ୍ ଗଦି । ସୋଫା ସେଟ୍, ଗଡ୍ରେଜ ଆଲମିରା, କାରପେଟ୍ । ସମସ୍ତ ଆଧୁନିକ ଚାକଚକ୍ୟପୂର୍ଣ୍ଣ ପରିବେଶ—ମତେ କିପରି ଖାପଛଡ଼ା ମନେ ହେଉଥିଲା । ଅତୀତର ସେହି ସ୍ନେହମୟୀ ମାଟି ଘରର ସ୍ମୃତିର ମହକ - ବାରମ୍ବାର ମତେ ଅସ୍ଥିର କରି ପକାଉଥିଲା ।

ଭାଉଜ ମତେ ଡାଇନିଂ ଟେବୁଲ୍ ପାଖରେ ବସି ଖାଇବା ପାଇଁ ନିର୍ଦ୍ଦେଶ ଦେଲେ । ମୁଁ ଅତି ସଂକୁଚିତ ହୋଇ ପଡ଼ିଥିଲି । ଗଦା ଗଦା ଚକଚକିଆ ପ୍ଲେଟ୍, ଚାମଚ, କାଚ ଗ୍ଲାସ ! —ସମସ୍ତ ଖାଦ୍ୟ ସାମଗ୍ରୀ ଟେବୁଲ ଉପରେ ଥୁଆ ହୋଇଥିଲା । ଚାମଚରେ ଉଠାଇ ଆଣି ଭାଉଜ ଅତି ଆଗ୍ରହରେ ତରକାରି ସବୁ ମୋ ପ୍ଲେଟ୍‌ରେ ପରଶି ଦେଉଥିଲେ । ମୁଁ ପ୍ରଥମେ ମୁନାକୁ ଖୋଇବାକୁ ଲାଗିଲି । ଆଉ ଭାବୁଥିଲି—ଅତୀତର

ସେହି ପଖାଳ ଭାତ—ଆଉ ଶାଗ ଖରଡ଼ା ! ମାଟି ଘରର ପିଣ୍ଡାରେ ବୋଉ ପିଢ଼ା ପକାଇ ମୁରୁଜ ମଣ୍ଡଳା ଦେଇ କଂସାଏ ଭାତ ଦିଏ—ବଡ଼ ଭଜା, ବାଡ଼ିରୁ ତୋଳା ହୋଇଥିବା ବାଇଗଣ ପୋଡ଼ି କଞ୍ଚା ମରିଚ ଓ ତେଲ ଦେଇ ଖାଇବାରେ କି ଆନନ୍ଦ ! ଚକ୍‌ଚକିଆ ଗ୍ଲାସରେ ରେଫ୍ରିଜେରେଟରରେ ଥୁଆ ବୋତଲର ଥଣ୍ଡା ପାଣିର ସେହି ପଖାଳ ସହିତ କୌଣସି ସାମଞ୍ଜସ୍ୟ ନ ଥିଲା ।

"ଆରେ ତମେ କିଛି ଖାଉନ ଯେ ? ମାଛ ଝୋଳ ଖାଅ ? ଭଲ ଲାଗିବ ।"

"ମୁଁ ମାଛ ଖାଏ ନାହିଁ ।"

"ନ ହେଲେ ମାଂସ ଚପ୍ ଖାଅ ?"

"ମାଛ, ମାଂସ ଅନେକ ଦିନରୁ ଛାଡ଼ି ଦେଇଛି ।"

"ଆଉ କଣ ଖାଉଛ ମ ତମେ ? ସେଥିପାଇଁ କେମିତି ସ୍ୱାସ୍ଥ୍ୟ ହୋଇଛି ଦେଖ ? ଭଲ କରି ଖିଆପିଆ କର ।"

ମୁଁ ଟିକିଏ ହସି ଦେଲି ! ସେ ପୁନର୍ବାର କହିଲେ "ମାଛ, ମାଂସ ଯଦି ନ ଖାଉଛ, ଦୁଧ, ଘିଅ କିଛି ଖାଅ ! ଇସ୍ କଣ ଦିଶୁଛ ତମେ ?"—କିଛି ଗୋଟାଏ ହଠାତ୍ ଯେପରି ଛିଣ୍ଡି ଗଲା !

ମୋର ଅଭାବ ଓ ଦୈନ୍ୟର ସୀମା କେତେ ଦୂରରେ ଆସି ପହଞ୍ଚିଛି—ସମସ୍ତ ଆଧୁନିକ ସୁଖ ଓ ସୁବିଧା ଭିତରେ ଥାଇ ଭାଉଜ ସେ କଥା ବୁଝି ପାରିବେ କିପରି ? ତାଙ୍କର ପ୍ରତ୍ୟେକ କଥାବାର୍ତ୍ତା, ଚାଲିଚଳନ, ପୋଷାକପତ୍ର ଭିତରେ ଥିଲା ଆଧୁନିକତା—ଯାହା ମୋ ପକ୍ଷରେ ଖାପ ଖୁଆଇବାରେ ବାଧା ସୃଷ୍ଟି କରିଥିଲା ।

ମୁନା ବିଷୟରେ ସେ ବିଶେଷ ଗୁରୁତ୍ୱ ଦେଉ ନ ଥିଲେ । ମୁଁ ଭାବୁଥିଲି ତା'ର ପୋଷାକପତ୍ର ବେଶି ଦାମିକା ନ ଥିଲା —ତା ଛଡ଼ା ଦେହର ରଙ୍ଗ ମଧ୍ୟ ଥିଲା ମଳିନ ।

ମୋର ତିଆଶ୍ଚ ପୁତୁରାମାନେ ଅତ୍ୟନ୍ତ ଶାନ୍ତ ଥିଲେ । ଟୁଲୁ ମୁନା ସହିତ ସାଙ୍ଗ ହୋଇଗଲା—ମୁନାର କୌଣସି ଅସୁବିଧା ହେଲା ନାହିଁ ଖେଳିବା ପାଇଁ । ଠେଲା ଗାଡ଼ି, ବଲ୍ ପ୍ରଭୃତି ନେଇ ଟୁଲୁ, ଲୁଲୁ, ମୁନା ଖେଳ ଆରମ୍ଭ କରି ଦେଲେ । ଜିଜିଟା ମୋ ପାଖରୁ ମୋଟେ ଉଠିବାକୁ ଇଚ୍ଛା କରୁ ନ ଥିଲା । କେତେ ଚଞ୍ଚଳ ସେ ମୋତେ ଚିହ୍ନି ପକାଇଲା ! ରକ୍ତର ସଂପର୍କ ବାସ୍ତବିକ୍ ଅଦ୍ଭୁତ !!

+ + +

ଏ ଶାଢ଼ୀଟା ଆମ ଘରୁ ଯାଇଥିଲା ବୋଧହୁଏ ?

—ଭାଉଜ ପଚାରିଲେ ।

"ହଁ ।"

"ତମର କଣ ଆଉ ଶାଢ଼ୀ ନ ଥିଲା ?"

"ମୁଁ ଗରିବ ହେଲି ।"—ସେ ଖୁବ୍ ବିରକ୍ତ ହୋଇ ଉଠିଲେ ।

"ଦେହରେ କିଛି ଗହଣା ନାହିଁ, ଶାଢ଼ୀ ନାହିଁ—କେମିତି ତମକୁ ପଠାଇଛନ୍ତି କେଜାଣି ! ହଜାର ଲୋକଙ୍କୁ ପୋଷିବ—ଦେଇ ଦେବ—ଅର୍ଜିବ କୁଆଡ଼ୁ ? ବାହାରକୁ ପୁଣି ଗୋଟାଏ ଷ୍ଟାଣ୍ଡାର୍ଡ ରଖିବା କଥା ତ ?"

ମୁଁ ଅଭିମାନରେ ଫୁଲି ଉଠୁଥିଲି । ତାଙ୍କର ମାସିକ ୩୦୦ ଟଙ୍କା ମାତ୍ର ଦରମା—ସେଥିରେ ମୋର ଗୃହିଣୀ ଛୁଆ —ସହର ଜାଗାରେ ଘରଭଡ଼ା ଦେଇ କୁଣିଆମଇତ୍ର ଚର୍ଚ୍ଚା କରି ଷ୍ଟାଣ୍ଡାର୍ଡ କିପରି ରଖିବା ସମ୍ଭବ ? ଏ ପର୍ଯ୍ୟନ୍ତ କ୍ୱାର୍ଟର୍ ଖଣ୍ଡିଏ ମିଳି ପାରିନି । ଧରାଧରି ନ କଲେ ଏ ଯୁଗରେ କିଏ ଶୁଣୁଛି !

ଭାଉଜଙ୍କର ପ୍ରତ୍ୟେକ କଥାରେ ଆନ୍ତରିକତା ଭରି ରହି ଥିଲେ ମଧ୍ୟ ତ୍ରୁଟି ସହ୍ୟ କରିବା ତାଙ୍କ ପକ୍ଷରେ ସହଜ ନ ଥିଲା । ଫଳରେ ତାଙ୍କର ସମସ୍ତ ସ୍ନେହ ଅନେକ ସମୟରେ ଭର୍ତ୍ସନାର ରୂପ ନେଇ ପ୍ରକାଶ ପାଉଥିଲା । ଆଉ ସମୟେ ସମୟେ ସେ ସମସ୍ତ ସହ୍ୟ କରିବା କଷ୍ଟକର ହୋଇ ପଡୁଥିଲା । ମୁଁ ଜାଣେ, ସେ ମୋର ସୁଖ ସୁବିଧା ଆଶା କରୁଥିଲେ । ତଥାପି

ଅଭାବର ବେଷ୍ଟନୀ ଭିତରେ ରହି ସମସ୍ତ କଥା ଚାଞ୍ଚଲ୍ୟ ପରି ମନେ ହେଉଥିଲା ମୋତେ ।

+ + +

କାର୍‌ରେ ବସି ରାଉରକେଲା ନୂଆ ସହର ଦେଖିବାର ଆଗ୍ରହ ନ ଥିଲା ମୋର । ମୁନା କିନ୍ତୁ ବହୁତ ଖୁସିରେ ମାମୁଁଙ୍କର ଗାଡ଼ିରେ ବସିଥିଲା । ସହରର ଆଲୋକସଜ୍ଜା, ଜନଗହଳି, ଦୋକାନର ଚକ୍‌ଚକ୍ୟ ତା ମନରେ ସୃଷ୍ଟି କରୁଥିଲା ବିଶେଷ ଆନନ୍ଦ !

ଭାଇଙ୍କର ବଡ଼ ପୁଅ ବୁଲୁ ସପ୍ତମ ଶ୍ରେଣୀରେ ପଢ଼ୁଥିଲା । —ସେ ଟିକିଏ ବଡ ହୋଇ ଯାଇଥିଲା, ଭାଷା ସଂକୁଚିତ ମନେ କରୁଥିଲା ମୋ ଆଗରେ । ଟୁଲୁ, ଭୁଲୁ ମୁନା ସହିତ ବେଶ୍ ଗପ ଜମେଇ ଦେଇଥାନ୍ତି । ଲିଲିଟା ଗ୍ଲେଟ ଥିଲା । —ଏଣୁ ଆମ ସାଙ୍ଗରେ ଆସି ନ ଥିଲା ।

"ପିଉସି ! ଏ ବଲ୍‌ଟା ମୁଁ ନେବ ?"
"ପିଉସି ! ଆଇସ୍‌କ୍ରିମ୍ ଖାଇବ ?"

ନିଜର ଦରିଦ୍ରତା ଲୁଚେଇବାକୁ ଯାଇ ମୁଁ ଯେ ମାର୍କେଟ୍‌ରୁ କାଚ, ସାବୁନ, ଖେଳନା କିଣିବାକୁ ବାଧ୍ୟ ହେଲି ତା'ନୁହେଁ— ପିଲାମାନଙ୍କର ଆଗ୍ରହ ଭାଙ୍ଗିବାକୁ ମଧ୍ୟ ମୋର ଇଚ୍ଛା ହେଉ ନଥିଲା (ଦରିଦ୍ରତାର ପୃଷ୍ଠରେ ବହୁ ସ୍ନେହ ଅପ୍ରକାଶିତ ରହିଯାଏ ସିନା !)

"କାହିଁକି ଅନ୍‌ନେସେସେରି, ଏତେ ଖେଳନା କିଣିଲୁ ?" ଭାଇ ବ୍ୟସ୍ତ ହୋଇ ପଡ଼ିଲେ ! ସେ ବିଶେଷ କଥା କହୁ ନ ଥିଲେ । କିନ୍ତୁ ବଡ଼ ଭାଇ ହିସାବରେ ତାଙ୍କର ପ୍ରତ୍ୟେକ କଥାରେ ଭରି ରହିଥିଲା ଆନ୍ତରିକତା ।"

ପିଲାମାନେ ଖେଳନା ପ୍ୟାକେଟ୍‌ଗୁଡ଼ିକର ଚାରିପଟେ ଘେରି ଯାଇ ଗୋଟି ଗୋଟି ଖୋଲିବାକୁ ଲାଗିଲେ । ଗ୍ଲେଟ ବଲ୍ ଦୁଇଟି, ଗୋଟାଏ ବନ୍ଧୁକ, ସ୍ପ୍ରିଙ୍ଗ ଲଗା ଉଡାଜାହାଜ । ଦୁଇଟି ବଡ ବଲ୍ । ଇସ୍, କି ଖୁସୀ

ହୋଇ ଯାଉଥିଲେ ସେମାନେ ! ଘରେ ଅନେକ ଦାମିକା ଖେଳନା ଥାଇ ମଧ୍ୟ ନୂଆ ଖେଳନାଗୁଡ଼ିକ ତାଙ୍କ ମନରେ ସୃଷ୍ଟି କରୁଥିଲା ଆନନ୍ଦ ।

ସେ ଦିନ ଭାଇ ମୋ ପାଇଁ ନେଇ ଆସିଲେ ଖଣ୍ଡେ ସମ୍ବଲପୁରୀ ଶାଢ଼ୀ । ଭାଉଜ କିନ୍ତୁ ଶାଢ଼ୀଟା ପସନ୍ଦ କରି ନ ଥିଲେ—କାରଣ ରଙ୍ଗଟା ଗାଢ଼ ହୋଇଗଲା ! "ଯୁ।ଙ୍କର ଯେଉଁ ଚଏସ୍ ?" ସେ ଆଉ ଖଣ୍ଡିଏ ପ୍ରିଣ୍ଟିଂ ଶାଢ଼ୀ ସୁଟକେଶ୍‌ରୁ କାଢ଼ି ଦେଲେ ।

ମୁନାର ଖାଇବା ବିଷୟ ନେଇ ଭାଉଜ ଅନେକ ସମୟରେ ମତେ ସତର୍କ କରି ଦେଇଥିଲେ —ବେ-ଟାଇମରେ ଖାଇଲେ କିପରି ସ୍ୱାସ୍ଥ୍ୟ ନଷ୍ଟ ହୁଏ, ଅବେଳରେ ଖାଇବା ଦ୍ୱାରା ଯକୃତ୍ ବଡ଼ ହୋଇଯାଏ । କିନ୍ତୁ ଲୋଭନୀୟ ଖାଦ୍ୟ ଦେଖିଲେ ମୁନା ଟିକିଏ ଅତି ମାତ୍ରାରେ ଖାଉଥିଲା । ବିଚରା ! ବହୁଦିନ ଧରି ଏଭଳି ଖାଇବାକୁ ପାଇନି ! କିନ୍ତୁ ଅଯଥା ମୁଁ ତାକୁ ମାରୁଥିଲି ।

ବାପା ମୁନାକୁ ଭାରି ଭଲ ପାଉଥିଲେ । ଛଅ ବର୍ଷର ମୁନା ତାଙ୍କ ପାଖରେ ବସି ଅନେକ କଥା କହୁଥିଲା । ରାତିବେଳେ ସମସ୍ତେ ଶୋଇ ପଡ଼ିଲେ ମୁଁ ବାପାଙ୍କ ପାଖରେ ବସୁଥିଲି । ବାପା ଶେଯରୁ ଉଠି ପାରୁ ନ ଥିଲେ । କିନ୍ତୁ ପ୍ରତ୍ୟେକ କଥା ସେ ମନେ ରଖିଥିଲେ । କେଉଁ ଦିନ ଆମେ ଭଉଣୀମାନେ ବାପାଙ୍କ ସାଙ୍ଗରେ ପୁରୀ ଯାଇଥିଲୁ—ବାଟରେ କିପରି ବର୍ଷା ହେଲା—ଗ୍ରାମ ଗାଁକୁ କିପରି ବାଘ ଆସିଥିଲା, ଫସଲ କଟା ସମୟରେ କିପରି ଭୋଜି ହେଉଥିଲା ଇତ୍ୟାଦି ।

ବୋଉ କଥା ସେ ବାରମ୍ବାର ମନେ ପକାଉଥିଲେ— ବୋଉ ଥିଲାବେଳେ ଆମ ଘରେ କେଉଁ କେଉଁ ପିଠା,ତରକାରୀ କରି ବୋଉ ସମସ୍ତଙ୍କୁ ଖାଇବାକୁ ଦେଉଥିଲା । ବୋଉର ଜନ୍ମ ପୁରୀରେ ହୋଇଥିବାରୁ ସେ କିପରି ଭୁଲ୍ ଭାଲ୍ କରି ସମ୍ବଲପୁରୀ ଭାଷା କହୁଥିଲା ଇତ୍ୟାଦି ଥିଲା

ଆମ ଗଳ୍ପର ବାଡଥିବଦ୍ଧ । ସମସ୍ତ ଐଶ୍ୱର୍ଯ୍ୟ ଭିତରେ ସେ ଯେପରି ନିଜକୁ ମନେ କରୁଥିଲେ ଏକାକୀ ।

+ + +

ବାହାରେ ଖାଇଣ ଥଣ୍ଡା । ପରଦିନ ସକାଳ ଛ'ଟାରେ ଭୁବନେଶ୍ୱର ବସ୍‌ରେ ମତେ ପଠାଇ ଦେବାପାଇଁ ସେ ଭୁବନେଶ୍ୱରରୁ ଟେଲିଗ୍ରାମ୍ କରିଥିଲେ । ମୁଁ ଯିବା କଥା ଶୁଣି ବାପା ବହୁତ ଦୁଃଖ କଲେ । ସେ ମତେ ଆଉ ଦୁଇ ଦିନ ରହିଯିବା ପାଇଁ କହୁଥିଲେ । ସାନ ଭଉଣୀ ଦୁଇ ଦିନ ପରେ ଆସିବାର ଥିଲା । ଦୁଇ ଭଉଣୀଙ୍କର ଭେଟ ହେବ··· ଭାଗ୍ୟରେ ଥିଲେ ଏହା ସମ୍ଭବ ।

ସାନ ଭଉଣୀକୁ ଦେଖିବା ପାଇଁ ଯେ ମୋର ଆଗ୍ରହ ନ ଥିଲା ତାହା ନୁହେଁ—କିନ୍ତୁ ବଡ଼ ଭଉଣୀ ହିସାବରେ ତାର ପିଲାମାନଙ୍କୁ କିଛି ଦେବା ପାଇଁ ମୋ ପାଖରେ ସମ୍ବଳ ନ ଥିଲା । ମାତ୍ର ଛଅଟି ଟଙ୍କା । ଯିବା ସମୟରେ ଭାଇଙ୍କ ପିଲାମାନଙ୍କ ହାତରେ ତ କିଛି ପୁଣି ଦେବାକୁ ପଡ଼ିବ ? ବାଟଖର୍ଚ୍ଚ ଯଦି ଭାଇ ନ ଦିଅନ୍ତି ! ଭୟରେ ମୁଁ ଥରି ଉଠୁଥିଲି— ।

"ବାହାରେ ଏତେ ଥଣ୍ଡା ପଡ଼ୁଛି, ସ୍ୱେଟର ଖଣ୍ଡେ ମଧ୍ୟ ନାହିଁ । —ପିଲାଟା ଯିବ କିପରି ? ଶାଲ ନାହିଁ, ସ୍ୱେଟର୍ ନାହିଁ—ଭୁବନେଶ୍ୱରରେ ରହି ବାହାରକୁ ବାହାରୁଥିଲା କିପରି ?" ଭାଉଜ କହି ଚାଲିଥାନ୍ତି —"କାଲି ଜାଣିଥିଲେ ଭାଇଙ୍କୁ କହିଥାନ୍ତି ଖଣ୍ଡେ ସ୍ୱେଟର୍ ହେଲେ ପିଲାଟା ପାଇଁ ନେଇ ଆସିଥାନ୍ତେ··· ।"

ମୁନା ମୋ ପାଖକୁ ଲାଗି ଆସି କହିଲା—"ଲାଲି, ଟୁଲୁ କୁଲୁଙ୍କର କେତେ ସୁନ୍ଦର ସ୍ୱେଟର୍ ଅଛି । ତୁ ମାମୁଁଙ୍କୁ କହିଥିଲେ ସେ ମୋ ପାଇଁ ଗୋଟିଏ ସ୍ୱେଟର୍ ଆଣି ଦେଇ ନଥାନ୍ତେ ?" ଅଭିମାନ ଓ ଦୁଃଖରେ ମୁଁ ଫୁଲି ଉଠୁଥିଲି । ଅଯଥା ମୁନାର କାନକୁ ରଗଡ଼ି ଦେଲି । ଆଖିରୁ ଦି'ଧାର ଲୁହ ଗଡ଼ାଇ ସେ ନୀରବ ରହିଲା । ଶୀତରେ ତା'ର ନିଶ୍ୱାସ ଓଠ ଦିଓଟି ନେଳି ପଡ଼ି ଯାଉଥିଲା ।

ଗାଡ଼ିବେଳ ହୋଇଗଲାଣି ବୋଲି ଭାଇ ଭିତରୁ ପାଟି କରି ଉଠିଲେ । ତାଙ୍କର ଦେହ ଭଲ ନ ଥିବାରୁ ବସ୍ ଷ୍ଟାଣ୍ଡରେ ଚାକର ବଳେଇ ଦେଇ ଆସିବ ବୋଲି ସ୍ଥିର ହେଲା । ଭାଇଙ୍କର ଏକ ମଟର ଟାୟାର ଦୋକାନ ଥିଲା । କଲିକତାରୁ କଣ ସବୁ ଜିନିଷ କିଣିବା ପାଇଁ କାରଟା ସହରରୁ ଚାଲି-ଯାଇଥିଲା । ତେଣୁ ରିକ୍ସାରେ ବସ୍‌ଷ୍ଟାଣ୍ଡକୁ ଯିବା ପାଇଁ ସ୍ଥିର ହେଲା ।

ଚାକର ମୋହନ ଚଞ୍ଚଳ ରିକ୍ସା ନେଇ ଆସିଲା । ପିଲାମାନଙ୍କ ହାତରେ ଦେଇ ଦେଇ ନୂଆ ଟିପାକ ଟଙ୍କା ଦେଇଦେଲି । ଏଣେ ଯିବାପାଇଁ ଟିକେଟ ହୋଇ ନାହିଁ । କୌଣସି ସମ୍ବଳ ମଧ୍ୟ ନାହିଁ । ତା ଛଡ଼ା ଦୀର୍ଘ ଦଶ ଘଣ୍ଟାର ବ୍ୟବଧାନ ଭିତରେ ମୁନା ବସ୍‌ରେ ଖାଇବା ପାଇଁ କୌଣସି ଜଳଖିଆର ବନ୍ଦୋବସ୍ତ ହୋଇ ନ ଥିଲା । ମୁନା ରାସ୍ତାରେ ଖାଇବା ପାଇଁ କପରି ଜିଦ୍ ଧରେ—ମୁଁ ତାହା ଭଲ ଭାବରେ ଜାଣିଥିଲି ।

ବାପାଙ୍କୁ ମୁଣ୍ଡିଆ ମାରି ଆସିଲା ବେଳେ ବାପା ଭାରି ବ୍ୟସ୍ତ ହୋଇ ପଡୁଥିଲେ—ଆଉ ଥରେ ଆସିବା ପାଇଁ ସେ ବାରମ୍ବାର କହୁଥିଲେ । ଭାଇ ଓ ଭାଉଜଙ୍କୁ ମୁଣ୍ଡିଆ ମାରି ଆସିଲା ବେଳେ ମୁଁ ଜୋରରେ କାନ୍ଦୁଥିଲି— ବାପା, କୁଲୁ, ବୁଲୁ, ଟୁଲୁ, ସମସ୍ତଙ୍କ ଆଖି ଛଳଛଳ । ଭାଉଜ ମଧ୍ୟ ଆଖିରୁ ଲୁହ ପୋଛି ନେଉଥିଲେ ।

ମୁଁ ନିଃସହାୟ ହୋଇ ଅତି ବ୍ୟାକୁଳ ଭାବରେ ଠାକୁରଙ୍କ ପାଖରେ ଲେଟି ପଡୁଥିଲି । ମୁଁ ଯେ ସମସ୍ତଙ୍କୁ ଛାଡ଼ି ଚାଲିଯାଉଛି—କେବଳ ସେଥିପାଇଁ ନୁହେଁ—ମୋର ଅଭାବ ଓ ଦୈନ୍ୟ କପରି ଏକ ଚରମ ସୀମାରେ ପହଞ୍ଚିଛି—ସେହି ଭାବନା ହିଁ ମୋତେ ଅସ୍ଥିର କରି ପକାଉଥିଲା । ଭାଉଜ ମୋ ଆଖିରୁ ଲୁହ ପୋଛି ଦେଇ ରିକ୍ସାରେ ବସାଇ ଦେଲେ ଏବଂ ଶୀଘ୍ର ହାଗ୍ କପରି ପହଞ୍ଚିଲି ଜଣାଇବା ପାଇଁ କହୁଥିଲେ ।

ମୁନାଟି ଶୀତରେ ମୋର ଲୁଗା କାନି ଭିତରେ ହାତ ଦୁଇଟି ଘୋଡ଼ାଇ ରଖିବା ପାଇଁ ଚେଷ୍ଟା କରୁଥିଲା !

ରିକ୍ସାବାଲାକୁ ଆଠ ଅଣା ଦେବା ପାଇଁ ଚୁକ୍ତି ହୋଇଥିଲି । ରିକ୍ସାରୁ ଓହ୍ଲାଇବା ପରେ ଅପ୍ରସ୍ତୁତ ହୋଇ ବାରମ୍ବାର ମୁନାର ସାର୍ଟ ପକେଟ୍ ଭିତରେ ଖୋଜିବାରେ ଲାଗିଲି । ମୋ ପାଖରେ ମାତ୍ର ୧୦ଟି ପଇସା ଥିଲା !

"ଆଜ୍ଞା ଶୀଘ୍ର ପଇସା ଦିଅନ୍ତୁ ।—ମୋ ପାଖରେ ଅନ୍ୟ ଗ୍ରାହକ ଠିଆ ହୋଇଛନ୍ତି ।"—ରିକ୍ସାବାଲାର ତାଗିଦ୍ ।

ଅପମାନରେ ମୋ ମୁହଁ ନାଲି ହୋଇ ଉଠିଲା । ଭାଇ କମ୍ପା ଭାଉଜ ମୁନା ପକେଟରେ ମଧ୍ୟ କିଛି ଦେବା ପାଇଁ ଭୁଲି ଯାଇଛନ୍ତି ! ପରିସ୍ଥିତିକୁ ସହଜ କରିବାକୁ ଯାଇ ଗୃହର ମୋହନ ରିକ୍ସାବାଲାକୁ ଆଠ ଅଣା ଦେଇ ବେଡ୍ ଖଣ୍ଡିକ ବସ୍‌ରେ ନେଇ ରଖିଲା ।...କେମିତି ଯାଇ ମୁଁ ବସ୍‌ରେ ବସିଲି ମୋର ମନେ ନାହିଁ ।

...ଠାକୁରଙ୍କୁ ଡ଼ାକୁଥିଲି ମୋର ମୃତ୍ୟୁ ହୋଇ ଯାଉ—କୌଣସି ଦୁର୍ଘଟଣାରେ ମୋର ସତ୍ତା ଲୋପ ହୋଇଯାଉ !...ମତେ ସେ କାହିଁକି ଯେ ଆସିବାକୁ ମନା କରୁଥିଲେ—ମୁଁ ବେଶ୍ ଭଲ ଭାବରେ ବୁଝି ପାରୁଥିଲି ।

× × ×

ହଠାତ୍ କାହାର ସ୍ନେହଭରା ଡ଼ାକରେ ମୁଁ ପ୍ରକୃତିସ୍ଥ ହେଲି । ଭାଇ ମୋ ହାତକୁ ଟିକେଟ ଦି'ଖଣ୍ଡି ବଢ଼ାଇ ଦେଇ କହିଲେ—

"ଏଠି ଦେବୁ ରୁନୁ ! ମୁଁ ଯାଇଥାନ୍ତି ନିଶ୍ଚୟ—ଦେହଟା ଭଲ ନାହିଁ ।"

ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁ ରହିଲି । ସେ ମୁନା ହାତକୁ ପାଞ୍ଚଟି ଟଙ୍କା ଓ ଗୋଟିଏ ବିସ୍କୁଟ୍ ପ୍ୟାକେଟ୍ ବଢ଼ାଇ ଦେଲେ ।

ତାଙ୍କୁ ଟିକିଏ ଆପୁଡ଼ାଇ କହିଲେ—
"ବୋଉକୁ ବାଟରେ ହଇରାଣ କରିବୁ ନାହିଁ ?"

ମୁନା ଖୁସି ହୋଇ ତାଙ୍କୁ ନମସ୍କାର କରୁଥିଲା ।

ସମସ୍ତ ସଂଯମର ପରଦା ଛିନ୍ନ କରି ମୁଁ ତାଙ୍କ ପାଦତଳେ ଲୋଟି-ପଡ଼ି କାନ୍ଦିବାକୁ ଲାଗିଲି । ସେ ମତେ ତଳୁ ଉଠାଇ ଦେଲେ ଏବଂ ରୁମାଲରେ ତାଙ୍କ ଆଖି ଦିଓଟି ବନ୍ଦ କରିବାରେ ଲାଗିଲେ । ରକ୍ତର ମମତା ନିକଟରେ ସମସ୍ତ ଆଭିଜାତ୍ୟ ହଜି ଯାଇଥିଲା ।

ଭାଇ କେତେବେଳେ ଗଲେ ଆଉ ବସ୍ କେତେବେଳେ ଛାଡ଼ିଲା, ମୋର ମନେ ନାହିଁ । ମୋର ଆଖି ସାମନାରେ ପ୍ରତିଫଳିତ ହେଉଥିଲା ସେହି ସହାନୁଭୂତି ଭରା ମୁହଁ, ବାପାଙ୍କର ସ୍ନେହଭରା ଡାକ, ପିଲାମାନଙ୍କର ସଶ୍ରଦ୍ଧ ଗୃହାଣୀ, ଆଉ ମନର କୂଳରେ ଅଜାଡ଼ି ହେଉଥିଲା ଗଣି ଗଣି ଭାବନାର ଢେଉ—ଯାହା ସମସ୍ତ ମମତା ଓ ଆନ୍ତରିକତା ସତ୍ତ୍ୱେ ମୁଁ ରଖି-ବାକୁ ଚାହିଁଥିଲି ଅବ୍ୟକ୍ତ ।



# ଆଶ୍ୱାସନା

ଭଦ୍ର ବ୍ୟକ୍ତିଙ୍କ ପ୍ରତି ମୋର ଆନ୍ତରିକତା ନ ଥିଲା, କିନ୍ତୁ ସେ ଦିନ ମୁଁ ସ୍ୱତଃ ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲି । ଅବଶ୍ୟ ମୋର ଦୁର୍ବଳତା ମାନସିକ କି ଆକସ୍ମିକ, ବିଚାର କରିବା ମୋ ପକ୍ଷେ ସମ୍ଭବ ନ ଥିଲା । 'ଶାରଦା ହାଉସ'ରୁ ସେ ଫେରି ଯିବା ପରେ ଏକ କରୁଣ ଅନୁଭୂତି ମତେ ଅଥୟ କରି ପକାଇଲା । କିପରି ମୁଁ ନିଜକୁ ପ୍ରକୃତିସ୍ଥ କରି ନେବି, ସେ ବିଷୟରେ କୌଣସି ଧାରଣା ମୋ ମସ୍ତିଷ୍କକୁ ସ୍ପର୍ଶ କରି ପାରୁ ନ ଥିଲା ।

ପାଞ୍ଚ ଟଙ୍କିଆ ନୋଟ ଖଣ୍ଡିକ ସେ ମୋ ହାତକୁ ବଢ଼ାଇ ଦେଇ କହିଥିଲେ—"ବହୁତ ଡେରି ହୋଇଗଲା ଆଜ୍ଞା···ଆପଣଙ୍କର ସହାନୁଭୂତି ପାଇଁ ଅଶେଷ ଧନ୍ୟବାଦ । ଭବିଷ୍ୟତରେ ଯଦି ପୁଣି ସେହି ସୁଯୋଗ ଆସେ—ଆପଣଙ୍କ ପାଖରୁ ନେଇଯିବି ।"

ମୋ ହାତ ମୁଠା ଭିତରେ ନୋଟ ଖଣ୍ଡିକ ବିଦ୍ରୂପ କରି ହସି ଉଠୁଥିଲା । ମୋର ସମସ୍ତ ବ୍ୟକ୍ତିତ୍ୱ, ଆଭିଜାତ୍ୟ ଘୃଣିତ ହୋଇ ଉଠୁଥିଲା ଏଇ ଶାଗୁଆ ରଙ୍ଗର ଅକ୍ଷର ଛପା କାଗଜ ନିକଟରେ ।

ହୋଟେଲର ବଲ୍‌ବଗୁଡ଼ିକ ନିଷ୍ପ୍ରଭ ଦେଖାଯାଉଥିଲା । ହୋଟେଲ ଭିତରେ ସଜା ଯାଇଥିବା ସୋଫା ସେଟ୍, ଫୁଲଦାନୀ, ରେଡ଼ିଓ, କାର୍ପେଟ୍, ଆଦି ଯେପରି ତାଚ୍ଛଲ୍ୟମିଶା ସହନଶୀଳତାର ମନ୍ଦହାସ ଖେଳାଇଥିଲେ । ମୋର ଉପ୍ପର ଭିତରେ ବଂଶ ହୋଇ ପଡ଼ିଥିବା ନୋଟଗୁଡ଼ିକ ମତେ ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ ।···

ସେ ଦିନ ବାହାରେ ଭୀଷଣ ଖରା । ହୋଟେଲରେ ବି ଗ୍ରାହକ ସଂଖ୍ୟା ଖୁବ୍ ଅଳ୍ପ । ମୁଁ ଏକ ସାପ୍ତାହିକ ବିଲ୍ ପ୍ରସ୍ତୁତ କରୁଥିଲି । ହଠାତ୍ ଭଦ୍ରବ୍ୟକ୍ତି ଜଣେ ମୋ ଟେବୁଲ ନିକଟକୁ ପଶି ଆସି ମତେ ନମସ୍କାର ଜଣାଇଲେ । କୌଣସି ଗ୍ରାହକ ଯେ ଏତେ ଶୀଘ୍ର ଟେବୁଲ ନିକଟକୁ ଚାଲି ଆସିବେ ଏକଥା ମୋର କଳ୍ପନାତୀତ । କାରଣ ମୋର ହୋଟେଲରେ ଏଭଳି ଏକ ପ୍ରଥା ଥିଲା ଯେ, କୌଣସି ଗ୍ରାହକ ଆସିଲେ ସେ ପ୍ରଥମେ ସେକ୍ରେଟେରୀ ନିକଟରେ ଆବଶ୍ୟକୀୟ ଜିନିଷ ବରାଦ କରୁଥିଲେ । ସୁତରାଂ ପ୍ରତିନମସ୍କାର କିମ୍ବା ଭଦ୍ରତା ନ ଜଣାଇ ମନେ ମନେ ମୁଁ ଆଗନ୍ତୁକଙ୍କ ପ୍ରତି ବିରକ୍ତ ହୋଇ ଉଠୁଥିଲି । ତାଙ୍କ ଆଡକୁ ନ ଚାହିଁ କିମ୍ବା ଆସିବାର କାରଣ ନ ପଚାରି ମୁଁ ମୋର ବିଲ୍ କାଟିବାରେ ବ୍ୟସ୍ତ ଥିଲି । ବହୁ ସମୟ ଧରି ଭଦ୍ରବ୍ୟକ୍ତି ଜଣକ ସେହିପରି ଠିଆ ହୋଇ ରହିଲେ ।

କିଛି ସମୟ ପରେ ମୋର ସେକ୍ରେଟେରୀ କେତେକ ଟଙ୍କା ଓ ବିଲ୍ ଆଣି ଟେବୁଲ ଉପରେ ରଖିଲେ । ଭଦ୍ରବ୍ୟକ୍ତିଙ୍କୁ ମୋ ପାଖରୁ ଶୀଘ୍ର ବିଦାୟ କରିଦେବା ଉଦ୍ଦେଶ୍ୟ ନେଇ ମୁଁ ସେକ୍ରେଟେରୀଙ୍କୁ କହିଲି—"ଏ ବାବୁ କଣ ଚାହୁଁଛନ୍ତି, ତାଙ୍କୁ ଭିତରକୁ ନେଇ ଯାଆନ୍ତୁ ।"

ସେ ଟିକିଏ ହସିଲେ । ହାତରେ ଧରିଥିବା କେତେ ଖଣ୍ଡ ପତ୍ରିକା ଭିତରୁ ଖଣ୍ଡିଏ ପତ୍ରିକା କାଢ଼ି ସେ ମୋ ହାତକୁ ବଢାଇ ଦେଲେ ।

" ଏ ପୁଣି ଗୋଟାଏ କି ପତ୍ରିକା ବାହାରିଲାଣି ? ନା ନା, ପତ୍ରିକା ପଢ଼ିବାକୁ ମୋର ସମୟ କାହିଁ ? ଆପଣ ଆଉ କାହାକୁ ଦେଇ ପାରନ୍ତି ।" ପତ୍ରିକାଟି ଥରେ ମାତ୍ର ଲେଉଟାଇ ତାଙ୍କ ହାତକୁ ବଢ଼ାଇ ଦେଲି ।

ସେ ପୁଣି ଥରେ ନେବାକୁ ବାଧ କଲେ—"ଏହାକୁ ଥରେ ଦେଖନ୍ତୁ ଆଜ୍ଞା ! ବହୁତ ଉପାଦେୟ ପତ୍ରିକା ଖଣ୍ଡିଏ । ବିଶେଷତଃ ଆପଣମାନଙ୍କ ସକାଶେ ଉଦ୍ଦିଷ୍ଟ ।"

ଭଦ୍ର ବ୍ୟକ୍ତି ଜଣକ ଯେ ପତ୍ରିକାର ଏଜେଣ୍ଟ୍ ଏଥିରେ କୌଣସି ସନ୍ଦେହ ନ ଥିଲା । ଅନିଚ୍ଛାସତ୍ତ୍ୱେ ପତ୍ରିକାଟି ଗ୍ରହଣ କଲି । ମାତ୍ର ପଚିଶ ପୃଷ୍ଠାର ଦାଣ୍ଡିଆ ସାଇଜ୍ ବହି ଖଣ୍ଡିଏ ! ପତ୍ରିକାଟିରେ ବିଶେଷ ଆକର୍ଷଣୀୟ ଆବରଣ ମଧ୍ୟ ଦିଆ ହୋଇ ନ ଥିଲା । ଭିତର ପୃଷ୍ଠାର କାଗଜଗୁଡ଼ିକ ଅତି ଶସ୍ତା ଧରଣର । ପତ୍ରିକାଟି ଏପଟ ସେପଟ ଲେଉଟାଇ ପଚାରିଲି "ଏହାର ଦାମ କେତେ ?"

"ଆଜ୍ଞା ଉପରେ ଦାମଟା ଲେଖା ଯାଇଛି"—ସେ ପତ୍ରିକାଟି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କଲେ ।

"ପଚିଶ ପଇସା ?" ବହୁତ ଗୁଡ଼ାଏ ଦାମ ହୋଇଗଲା । ହିନ୍ଦୀ, ବଙ୍ଗଳା ଭାଷାର ପତ୍ରିକାଗୁଡ଼ିକ ବହୁତ ଶସ୍ତାରେ ମିଳି ଥାଏ । କଭର କି ଚମତ୍କାର ! ତା ଛଡ଼ା ସେଥିରେ ସୁନ୍ଦର କବିତା, ଗଳ୍ପ ଓ ଅନେକ ଶିକ୍ଷଣୀୟ ବିଷୟ ମଧ୍ୟ ରହି ଥାଏ । ମାତ୍ର ପଚିଶଟା ଦେଲେ ଆଡ଼ୌ ବାଧେ ନା । ସାହିତ୍ୟ ପ୍ରତି ମୋର ଅନୁରାଗ ଅଛି ··କିନ୍ତୁ ଓଡ଼ିଆ ପତ୍ରିକା ? କିଏ ସେ ସବୁ ଲେଖନ୍ତି······"

"ନାହିଁ ଆଜ୍ଞା—ଏଇଟା ଗୋଟାଏ ନୂଆ ଧରଣର ପତ୍ରିକା । ଆପଣ ଥରେ ପଢ଼ନ୍ତୁ । ବିଦେଶର ଯେ କୌଣସି ପତ୍ରିକା ସହିତ ଏହାର ଲେଖା ତୁଳନୀୟ···ଦେଖନ୍ତୁ, କେତେ ରକମର ନୂଆ ବିଭାଗ ଯା ଭିତରେ ଖୋଲି ଯାଇଛି···"

"ହଃ-କେତେ ଯେ ଆଜିକାଲି ଓଡ଼ିଆରେ ଶସ୍ତା ଧରଣର ପତ୍ର-ପତ୍ରିକା ବାହାରିଲାଣି । ଆପଣଙ୍କ ଦାମଟା କିନ୍ତୁ ବେଶି ହୋଇଗଲା । ଅଚ୍ଛା, ଆପଣଙ୍କର ପଇସାଟା ନେଇ ଯାଆନ୍ତୁ—" ଅଧିକା ସମୟ ନଷ୍ଟ କରିବାକୁ ମୁଁ ଇଚ୍ଛା କରୁ ନ ଥିଲି ।

ସେ ଟିକଏ ନୀରବ ହୋଇଗଲେ । କିଛି ସମୟ ପରେ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲେ —"ନା, ଆଜି ମୁଁ ଆପଣଙ୍କୁ ପ୍ରେଜେଣ୍ଟ କରୁଛି ।"

ତାଙ୍କର ଏପରି ଅଯାଚିତ ଦାନ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ନ ଥିଲି । ଟେବୁଲ ଡ୍ରୟାର୍‌ରୁ ପଇସାର ପଲମା ବାହାର କରି ଦେବା ପାଇଁ ମୁହଁ ଟେକି ଦେଖେ ତ ଭଦ୍ର ବ୍ୟକ୍ତି ଆଉ ନାହାନ୍ତି । ବାହାରେ ଗୋଟିଏ ରିକ୍‌ସା ବାଲାକୁ ଡାକି ସେ ବସିବାକୁ ଉଦ୍ୟତ ହେଉଥିଲେ ।



କିଛି ଦିନ ପରେ ନୂତନ ପ୍ରକାଶିତ ଏକ ପତ୍ରିକା ନେଇ ଭଦ୍ର-ବ୍ୟକ୍ତି ଜଣକ ଆସି କହିଲେ --

"ଦେଖନ୍ତୁ ଆଜ୍ଞା । ଏଥର ଏହାର ଦାମ୍ କମିଯାଇଛି । ବାର୍ଷିକ ଚାନ୍ଦା ମାତ୍ର ପାଞ୍ଚ ଟଙ୍କା ! ଦଶହରା ସଂଖ୍ୟା ପାଇଁ ଏହାର ଏକ ବିଶେଷ ସଂଖ୍ୟା ବାହାରୁଛି । ଆପଣ ଏଥର ଗୋଟାଏ ହାଫ୍ ପେଜ୍ ଆଡ୍‌ଭର୍ଟାଇଜ-ମେଣ୍ଟ୍ ଦିଅନ୍ତୁ । ଦେଖନ୍ତୁ ଏଥର କଭରଟା ବେଶ୍ ଚମତ୍କାର ହୋଇଛି ।" କହିଲାବେଳେ ତାଙ୍କର ଆଖି ଉଜ୍ଜ୍ୱଳ ହୋଇ ଉଠୁଥିଲା ।

ମୁଁ ଅପେକ୍ଷାକୃତ ଗମ୍ଭୀର ହୋଇ ପଚାରିଲି —"ଆପଣ କଣ ଏ ପତ୍ରିକା ବିଭାଗରେ କାମ କରନ୍ତି ? ନା ଆଡ୍‌ଭର୍ଟାଇଜ୍‌ମେଣ୍ଟ ସଂଗ୍ରହ କରି କମିଶନ ପାଆନ୍ତି ?"

ସେ ଟିକଏ ହସିଲେ । କହିଲେ—"ନାଇଁ ଆଜ୍ଞା, ପତ୍ରିକା ପ୍ରତି ମୋର ଗଭୀର ଅନୁରାଗ ଅଛି, ଯାହା ଫଳରେ କିଛି ଆଡ୍‌ଭର୍ଟାଇଜ୍‌ମେଣ୍ଟ୍ କିଛି ଗ୍ରାହକ ଚାନ୍ଦା ସଂଗ୍ରହ କରିବା ପାଇଁ ଯେତେଦୂର ଚେଷ୍ଟା କରିଯାଇ-ପାରେ କରୁଛି ।"

"ଆପଣଙ୍କର ସରକ୍ୟୁଲେସନ୍ କେତେ ?"
"ଦୁଇ ହଜାର ।"

"ମାତ୍ର ଦୁଇ ହଜାର ? ଆଉ ବିଜ୍ଞାପନ ନେବେ କଣ ? ଏତେ ଅଳ୍ପ ସର୍କୁଲେସନ୍‌ରେ ଆମେ ବିଜ୍ଞାପନ ଦେଲେ ଆମର କଣ ଫାଇଦା ହେବ ? ବରଂ କହୁଛନ୍ତି ଯେତେବେଳେ ଯଦି ଗୋଟାଏ ଗ୍ରାହକ କରି-ପାରନ୍ତି···।"

ଭଦ୍ରବ୍ୟକ୍ତି ଜଣକ ବୋଧହୁଏ ଅପ୍ରତିଭ ଭାବରେ ଅପ୍ରସ୍ତୁତ ହୋଇ ପଡ଼ିଲେ ।

ମୁଁ ଭାବିଲି ଏହାପରେ ଭଦ୍ରବ୍ୟକ୍ତି ବୋଧହୁଏ ଆଉ ଏଠାକୁ ଆସିବେ ନାହିଁ । କିନ୍ତୁ ମୋର ଧାରଣା ଭୁଲ୍ । ତା ପରଠାରୁ ଭଦ୍ରବ୍ୟକ୍ତି ଅନେକ ଥର ଆସିଛନ୍ତି । ତାଙ୍କ ପ୍ରତି ମୋର ବିଶେଷ ବିରକ୍ତି ଭାବ ପ୍ରକାଶ ପାଉଥିଲି, ତାଙ୍କର ଆସିବାଟା ମୁଁ ସମର୍ଥନ କରୁ ନ ଥିଲି । ସେ କିନ୍ତୁ ଗ୍ରାହକ ଚାନ୍ଦା ନେବା ପାଇଁ ଅନେକ ଥର ତାଙ୍କର ରସିଦ୍ ବହି ଖଣ୍ଡିକ ଦେଖାଇଛନ୍ତି । ଠଙ୍କାଟା ନେବା ପାଇଁ ଅପେକ୍ଷା କରିବାକୁ କହି ମୁଁ ମୋର ବିଲ୍ କାଟିବାରେ ବ୍ୟସ୍ତ ରହୁଥିଲି । ତାଙ୍କର ବେଶ ପୋଷାକ, ଉଦାସୀନ ବ୍ୟବହାର, ଶାନ୍ତ ସରଳ ମୁଖମଣ୍ଡଳ ଦେଖିଲେ ମୋ ମନରେ ସନ୍ଦେହ ସୃଷ୍ଟି ହେଉଥିଲା । ବାରମ୍ବାର ଆସିବାର ଅର୍ଥ କଣ ହୋଇପାରେ ? ହୁଏତ ପତ୍ରିକାର ଏଜେଣ୍ଟ୍ ନାମରେ ପରିଚୟ ଦେଇ ମୋ ବିରୁଦ୍ଧରେ ସମ୍ବାଦ ସଂଗ୍ରହ କରିବା ତାଙ୍କର ଲକ୍ଷ୍ୟ । ଏହି ଧାରଣା ମୋ ମନରେ ଦୃଢ଼ ହୋଇ ଯାଉଥିଲା । ସେଇ ହେତୁ ମୁଁ ତାଙ୍କୁ ଆଦୌ ଉତ୍ସାହିତ କରିବାକୁ ଚାହୁଁ ନ ଥିଲି ।

ବିଲ୍ ପ୍ରସ୍ତୁତରେ ବ୍ୟସ୍ତ ଥିଲାବେଳେ ସେ ଅନ୍ୟମାନଙ୍କ ସହ ବଙ୍ଗଳା ଜାତିକୁ ପ୍ରଶଂସା କରୁଥିବାର ମୁଁ ଅନେକ ଥର ଶୁଣିଛି । ତାଙ୍କ ଜାତିରେ କିପରି ଶିକ୍ଷିତଗଣ ସାହିତ୍ୟକୁ ଆଦର କରନ୍ତି, ଘର ପିଚ୍ଛା ପ୍ରତ୍ୟେକେ ତିନି ଚାରି ରକମର ପତ୍ରିକା କିଣି ପଢ଼ନ୍ତି, ଫଳରେ ସେ ରାଜ୍ୟରେ ସାହି-ତ୍ୟର ଢେର ଉନ୍ନତି ହୋଇଛି ଇତ୍ୟାଦି ଇତ୍ୟାଦି······। ଏ ସମସ୍ତ ଯେ ମୋ ପ୍ରତି ଆକ୍ଷେପ କରାଯାଉଥିଲା ତାହା ଜାଣି ମଧ୍ୟ ମୁଁ ନୀରବ ରହୁଥିଲି । ମୋତେ ଆକ୍ଷେପ କରି ମୋ ପାଖରୁ ଗ୍ରାହକ ଚାନ୍ଦା ସଂଗ୍ରହ କରିବା ଧୃଷ୍ଟତା ମାତ୍ର ମୁଁ ଏଇ କଥା ଭାବୁଥାଏ ।

ଥରେ ଅବସର ସମୟରେ ମଧ୍ୟାହ୍ନ ଭୋଜନ ପରେ ଦୈନିକ ଖବର କାଗଜ ଲେଉଟାଉଛି—ଏକ ପ୍ରବନ୍ଧ ଉପରେ ମୋର ଦୃଷ୍ଟି ପଡ଼ିଲା । ପ୍ରବନ୍ଧ ଭିତରେ ବିଶିଷ୍ଟ ସାହିତ୍ୟ ପତ୍ରିକାର ଲେଖକମାନଙ୍କ ସଂପର୍କରେ ବିସ୍ତୃତ ବିବରଣୀ ଦିଆ ଯାଇଥାଏ । ପ୍ରତ୍ୟେକ ଲେଖକଙ୍କର ଜୀବନୀ ସହିତ ତାଙ୍କର ଛବି ଛପା ହୋଇଥିଲା । ସେଥିରେ ବହୁ ଲେଖକଙ୍କ ସମ୍ବନ୍ଧରେ ଉଚ୍ଚ ଧରଣର ଆଲୋଚନା ମଧ୍ୟ କରାଯାଇଥିଲା । ମୋର ପୂର୍ବ ପରିଚିତ ଭଦ୍ରବ୍ୟକ୍ତି ଜଣକ ଯେ ଏକ ବିଶିଷ୍ଟ ପତ୍ରିକାର ପ୍ରକାଶକ ଏହା ମତେ ବହୁ ଗୁଣରେ ଆଶ୍ଚର୍ଯ୍ୟାନ୍ୱିତ କରି ପକାଇଲା । ତାଙ୍କ ପ୍ରତି ମୋର ବ୍ୟବହାର କେତେ ତ୍ରୁଟିପୂର୍ଣ୍ଣ—ଏହାଭାବି ବାରମ୍ବାର ମୁଁ ଅନୁତାପ କରିବାକୁ ଲାଗିଲି । ପ୍ରକାଶକଙ୍କର ପରିଚୟ ନ ଜାଣିଥିଲେ ମଧ୍ୟ ଅନ୍ତତଃ ଭଦ୍ରତା ଦୃଷ୍ଟିରୁ ଗ୍ରାହକ ଟଙ୍କାଟା ଦେଇଦେବା ମୋର ଉଚିତ ଥିଲା । ତାଙ୍କୁ ଅପମାନିତ କରିବା ମୋ ପକ୍ଷେ କେତେଦୂର ଅନୁଚିତ ହୋଇଛି, ମନେମନେ ତାହା ବିଶ୍ଳେଷଣ କରିବାକୁ ଲାଗିଲି । ତା ପରଠାରୁ ବହୁତ ଦିନ ଧରି ତାଙ୍କୁ ଅପେକ୍ଷା କଲି, କିନ୍ତୁ ତାଙ୍କ ସହିତ ମୋର ଆଉ ସାକ୍ଷାତ୍ ହୋଇ ନ ଥିଲା । ସମୟେ ସମୟେ ଏହି ବିଷୟ ନେଇ ମୁଁ ମନେ ମନେ ଲଜ୍ଜିତ ହୋଇ ଯାଉଥିଲି ମଧ୍ୟ । ଭଦ୍ରବ୍ୟକ୍ତି କେଉଁଠି ରହନ୍ତି, କ'ଣ କରନ୍ତି, ମୋ ପକ୍ଷରେ ଜାଣିବା ତାହା ସମ୍ଭବପର ନ ଥିଲା । ପତ୍ରିକାଟିର ପଛପଟ ଠିକଣା ଅନୁଯାୟୀ ମୁଁ ଥରେ ତାଙ୍କୁ ଦେଖିବାକୁ ଯାଇଥିଲି । କିନ୍ତୁ ଭଦ୍ରବ୍ୟକ୍ତି ଏ ମଧ୍ୟରେ ଘର ବଦଳାଇ ଦେଇଥିବାରୁ ହତାଶ ମନରେ ଫେରି ଆସିବାକୁ ପଡ଼ିଥିଲା । ଏ ଦିଗରେ ଆଉ ଥରେ ଚେଷ୍ଟା କରିବାକୁ ମୋର ସମୟ ମଧ୍ୟ ନ ଥିଲା ।



ଆକସ୍ମିକ ଭାବରେ ଥରେ ଭଦ୍ରବ୍ୟକ୍ତିଙ୍କ ସହିତ ମୋର ବସ୍-ଷ୍ଟାଣ୍ଡ୍‌ରେ ସାକ୍ଷାତ ହୋଇଥିଲା । ତାଙ୍କ ସ୍ତ୍ରୀ ପିଲମାନଙ୍କୁ ନେଇ ସେ ଟିକ୍‌ସାରୁ ଓହ୍ଲାଉ ଥିଲେ । ତାଙ୍କର ସ୍ତ୍ରୀ ଅତ୍ୟନ୍ତ ସୁନ୍ଦରୀ, କିନ୍ତୁ ବେଶ-ପୋଷାକ ଶସ୍ତା ଧରଣର । ମନେ ହେଉଥିଲା—ଦାରିଦ୍ର୍ୟର ବେଷ୍ଟନୀ ଭିତରେ ସେ ଅତିଶୟ ମଳିନ ଦେଖା ଯାଉଥିଲେ । ଭଦ୍ରବ୍ୟକ୍ତି

ଜଣକ ମୋତେ ଚିହ୍ନି ନ ଥିଲେ । ବସ୍ ଠିଆ ହୋଇ ଥିବାରୁ ସେ ଜନିଷ-ପତ୍ର ଲଦିବାରେ ବ୍ୟସ୍ତ ଥିଲେ ।

ମୁଁ ପାଖକୁ ଯାଇ ପଚାରିଲି—"କୁଆଡ଼େ ଯାଉଛନ୍ତି ଆଜ୍ଞା, ନମସ୍କାର !"

"ବରହମପୁର !"—ସେ ଗମ୍ଭୀର ଭାବରେ ଉତ୍ତର ଦେଲେ ।

"କେବେ ଫେରିବେ ?—ବହୁତ ଦିନ ପରେ ଆପଣଙ୍କ ସହିତ ଦେଖା ହୋଇଗଲା ।"

ସେ ବୋଧହୁଏ ମୋର କୌଣସିଟି କଥା ଶୁଣିପାରି ନାହାନ୍ତି ।

ମୁଁ ପୁନର୍ବାର ପଚାରିଲି, "କେବେ ଫେରୁଛନ୍ତି ? ହୋଟେଲ ଆଡ଼େ ଯିବେ—ନିମନ୍ତ୍ରଣ ରହିଲା ।"

"ଆଜ୍ଞା ଚେଷ୍ଟା କରିବି"—ସେ ସଂକ୍ଷେପରେ ଉତ୍ତର ଦେଲେ ।

ବସ୍ ଛାଡ଼ିବା ସମୟ ହୋଇ ଯାଇଥିଲା । ସିଟ୍ ର ଅଭାବ ହେତୁ ସେ ଓ ତାଙ୍କର ସ୍ତ୍ରୀ ଯେମିତି ଠିଆ ହୋଇଥାନ୍ତି । ତଳେ ଥୁଆ ହୋଇଥିବା ବାକ୍ସ ଉପରେ ପିଲା ଦୁଇଟିକୁ ତାଙ୍କର ବସେଇ ଦେଇଥାନ୍ତି । ବାର-ମ୍ବାର ନମସ୍କାର କରିବା ସତ୍ତ୍ୱେ ମୁଁ ସେଦିନ ଭଦ୍ରବ୍ୟକ୍ତିଙ୍କଠାରୁ ପ୍ରତି-ନମସ୍କାର ପାଇ ନ ଥିଲି । ହୁଏତ ଯିବାର ବ୍ୟସ୍ତତା ହେତୁ ସେ ଏତେ ଖିଆଲ କରି ପାରି ନାହାନ୍ତି; କିମ୍ବା ପୂର୍ବ ବ୍ୟବହାର ମନେ ରଖି ସେ ମୋ ପ୍ରତି ଅସନ୍ତୁଷ୍ଟ ହୋଇପାରି ଥାଆନ୍ତି ।

ସେଦିନ ରାତିରେ କିନ୍ତୁ ଭଲ ନିଦ ହେଲା ନାହିଁ । ଏକ ଅସ୍ୱସ୍ତିକର ଅନୁଭୂତି । ଯଥେଷ୍ଟ ଅପମାନିତ ହୋଇଥିଲେ ସୁଦ୍ଧା ମୁଁ ଭଦ୍ର-ବ୍ୟକ୍ତିଙ୍କ ପ୍ରତି ବିରକ୍ତି ପ୍ରକାଶ କରି ପାରୁ ନ ଥିଲି । ଟଙ୍କାଟା ବସ୍ ଷ୍ଟାଣ୍ଡ ପାଖରେ ଦେଇ ଦେଇଥିଲେ ବରଂ ଭଲ ହୋଇଥାନ୍ତା । ଭଦ୍ରବ୍ୟକ୍ତି କେଉଁଠି ରହନ୍ତି, କେବେ ଫେରିବେ, ଏ ବିଷୟରେ ପୁନରାବୃତ୍ତି କରିବାକୁ ଲାଗିଲି । ତାଙ୍କର ଶାନ୍ତଶିଷ୍ଟ ଆଖି ଦିଓଟି ମୋ ଆଖି ସାମନାରେ ବାର-ମ୍ବାର ଭାସି ଆସୁଥାଏ ।

କଥାଟାକୁ ବହୁ ସମୟ ଧରି ମନେ ମନେ ବିଶ୍ଳେଷଣ କରିବାକୁ ଲାଗିଲି । ପତ୍ରିକାର ସମ୍ପାଦକରୂପେ ପ୍ରଥମେ ସେ କାହିଁକି ପରିଚୟ ଦେଇ ନ ଥିଲେ ? ତାଙ୍କର ପୋଷାକ ପତ୍ରର ମଳିନତା ଯୋଗୁଁ ହୁଏତ ସେ ଲଜ୍ଜା ବୋଧ କରୁଥିଲେ । କିମ୍ବା ଏଜେଣ୍ଟ ହିସାବରେ ଘୂରୁଥିବା ହେତୁ ସମ୍ପାଦକ ଭାବରେ ନିଜର ପରିଚୟ ଦେବା ଲାଗି ସେ ହୁଏତ କୁଣ୍ଠିତ ହୋଇ ପଡ଼ୁଥିଲେ ।

ମୋର ମନେ ପଡ଼ିଲା, ଭଦ୍ରବ୍ୟକ୍ତି ତ ଅନେକ ସମୟରେ ରିକ୍ସାରେ ଆସନ୍ତି । କୌଣସି ଏଜେଣ୍ଟ କେବେ ରିକ୍ସାରେ ଆସିବା ସମ୍ଭବ ନୁହେଁ । ମୋ ନିକଟକୁ ଆସିବାରେ ତାଙ୍କର ଗ୍ରାହକ ଚାନ୍ଦା ଅପେକ୍ଷା ରିକ୍ସା ଖର୍ଚ୍ଚଟା ଅଧିକ ହୋଇଥିବ ବୋଲି ମୁଁ ଅନୁମାନ କଲି ।

ସେ ଯାହା ହେଉ—ଟଙ୍କାଟା ଆଦାୟ କରିବା ପାଇଁ କିମ୍ବା ବିଜ୍ଞାପନ ସଂଗ୍ରହ କରିବା ପାଇଁ ଯେଉଁ ତୋଷାମୋଦ କରାଯାଇଥାଏ, ଉକ୍ତ ଭଦ୍ରବ୍ୟକ୍ତିଙ୍କ ପାଖରେ ତାହା ଅଧିକ ମାତ୍ରାରେ ପ୍ରକାଶ ପାଉ ନ ଥିଲା । ତା ଛଡ଼ା ଅନ୍ୟାନ୍ୟ ପତ୍ରପତ୍ରିକାର ସମ୍ପାଦକଙ୍କ ପରି ସେ ଗାଡ଼ିମଟର ବ୍ୟବହାର କରୁ ନ ଥିଲେ । ତାଙ୍କୁ ବିଜ୍ଞାପନ ଦେଇ ଯେ ମୋର କିଛି ଫାଇଦା ହାସଲ ହୋଇଥାନ୍ତା ତା ମଧ୍ୟ ସମ୍ଭବ ନ ଥିଲା । ଗ୍ରାହକ ଚାନ୍ଦାଟା ଦେବା ପାଇଁ ମୁଁ କାହିଁକି ଇଚ୍ଛା କରୁ ନ ଥିଲି, ମୁଁ ନିଜେ ମଧ୍ୟ ଜାଣି ପାରୁ ନ ଥିଲି । ଅନେକ ରାତିଯାଏ ବାରମ୍ବାର ମୁଁ ଏହି କଥା ଭାବିବାକୁ ଲାଗିଲି ।



ରାତିରେ ଭୀଷଣ ବର୍ଷା ହେଉଥିଲା । ଅଧିକ ରାତି ହେତୁ ହୋଟେଲରେ ଗ୍ରାହକ ସଂଖ୍ୟା କମି ଆସୁଥିଲା । ମାଂସ ଚପ୍ ବହୁ ପରିମାଣରେ ବଳି ଯାଇଥିବାରୁ ହୋଟେଲ ବୟ ମୋ ଟେବୁଲରେ ଦୁଇ ପ୍ଲେଟ୍ ରଖି ଦେଇ ଗଲା । ଚାମଚରେ ଭାଙ୍ଗି ଖଣ୍ଡେ ମାଂସ ଚପ୍ ପାଟିକୁ ନେଉଛି, ହୋଟେଲ ବୟ କହିଲା—"ସାର୍, ମ୍ୟାନେଜର ଚାଲିଗଲେଣି । ଏ ବାବୁଙ୍କର ଟଙ୍କାଏ ଚାଳିଶ ପଇସା ହେଉଛି ।"

ଦୁଇ ଟଙ୍କିଆ ନୋଟ୍ ସେ ମୋ ହାତକୁ ବଢ଼ାଇ ଦେଲେ ।

"ଓଃ, ଆପଣ ? ନମସ୍କାର ! ଆଜ୍ଞା, ଥାଉ ଟଙ୍କାଟା ରଖନ୍ତୁ । କେବେ ବରହମପୁରରୁ ଫେରିଲେ ?" ଚେୟାର ଖଣ୍ଡିକ ଟାଣି ଆଣି ପରିଚିତ ଭଦ୍ର ବ୍ୟକ୍ତିଙ୍କୁ ବସିବାକୁ ଅନୁରୋଧ କଲି ।

ଭଦ୍ରତା ଖାତିରରେ ପ୍ରତିନମସ୍କାର ଜଣାଇ ସେ ପୁନର୍ବାର ଟଙ୍କାଟା ଫେରାଇ ଦେଲେ ।

ଟଙ୍କାଟା ଗ୍ରହଣ ନ କରି ବୟ୍‌କୁ ବରାଦ ଦେଲି –

"ଏ ବାବୁଙ୍କ ପାଇଁ ମାଂସ ଚପ୍ ଦୁଇ ପ୍ଲେଟ ନେଇ ଆ– ।"

"ମୁଁ ମାଂସ ଖାଏନି ଆଜ୍ଞା ! କ୍ଷମା କରିବେ ।"

"କଫି ? ମିଠା ?"

"ନା କଫି ମୁଁ ଖାଏନି ! ଆପଣ ମୋ ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଜଳଖିଆ ଖାଇ ସାରିଛି ।" ମୋର ବ୍ୟବହାରରେ ସେ ସଙ୍କୁଚିତ ହୋଇ ପଡ଼ୁଥିଲେ ।

"ଆପଣ ସିଗାରେଟ୍ ଖାଆନ୍ତି ?"

"ନାହିଁ ଆଜ୍ଞା, ଏ ସବୁ ମୋର ଅଭ୍ୟାସ ନାହିଁ ।"

"ଯାହା ହେଉ ଏ ମହଙ୍ଗା ସମୟରେ ଆପଣ ବେଶ୍ କରିଛନ୍ତି । ଏ ଯେଉଁ ଯୁଗ ହେଲାଣି··· କ'ଣ ଯେ ଖାଇବ ମଣିଷ । ଡ଼ାଲି, ଚାଉଳ, ଅଟା, ତେଲ, କୁଇଣ୍ଟାଲ ପିଛୁ ଦଶପନ୍ଦର ଟଙ୍କା ବଢ଼ି ଯାଇଛି । ମାଂସ କେଜି ଆସି ଛଅ ଟଙ୍କା ହେଲାଣି । ବରହମପୁର ଆଡେ ମାଛଟା ବହୁତ ଶସ୍ତା, ନୁହେଁ ?"

"ହଁ ଏଠିକା ଅପେକ୍ଷା ଢେ଼ର ଶସ୍ତା । ପନିପରିବା ମଧ୍ୟ ଶସ୍ତା । ବର୍ତ୍ତମାନ ବହୁତ ମକା ସେଠାରେ ମିଳୁଛି ।"

"ମକା କେଜି କେତେ ହୋଇଛି ?"

"ମକା ସେଠାରେ କେଜି ଦରରେ ମିଳେ ନା । ଟଙ୍କାକୁ ପନ୍ଦର କୋଡ଼ିଏ ।"

"ଏତେ ଶସ୍ତା ? ମକା ମଞ୍ଜିରେ ଭଲ ଚପ୍ ହୁଏ । ଥରେ ମୁଁ ମକା ଚପ୍ କରିଥିଲି । ଖରି ଟେଷ୍ଟ୍‌ଫୁଲ୍ ହୋଇଥିଲା । ଖରି ଲାଭ ହୋଇଥିଲା ସେଥର । କିନ୍ତୁ ବହୁତ ଆଡ଼ଭର୍ଟାଇଜମେଣ୍ଟ୍ କରିବାକୁ ପଡ଼ି-ଥିଲା । ପ୍ରାୟ ପ୍ରତ୍ୟେକ ପତ୍ରପତ୍ରିକାକୁ ଆଡ଼୍‌ଭର୍ଟାଇଜ୍‌ମେଣ୍ଟ ଦେଇଥିଲି ।"

ଭଦ୍ରବ୍ୟକ୍ତି ଜଣକ ଯିବାକୁ ଉଦ୍ୟତ ହେଲେ ।

"ଏତେ ଶୀଘ୍ର କ'ଣ ଚାଲି ଯାଉଛନ୍ତି ? ବସନ୍ତୁ, ବସନ୍ତୁ ! ବର୍ଷାଟା ଛାଡ଼ିଯାଉ ।"

"ନାଇଁ ଆଜ୍ଞା, ବହୁତ ଡେରି ହେଲାଣି । ମୋର ଛତା ଅଛି, ମୁଁ ଚାଲିଯିବି ।"

"ଅଚ୍ଛା ଆପଣଙ୍କର ଠିକଣାଟା ବହୁ ଦିନରୁ ରହିଯାଇଛି ଦିଅନ୍ତୁ । ଏଥର ଗ୍ରାହକ ଲିଷ୍ଟ୍‌ରେ ମୋ ନାଁଟା ଲେଖିଦେବେ । ହଁ—ଏଥର ପୂଜା ସଂଖ୍ୟାରେ ଆମେ ସବୁ ପତ୍ରିକାକୁ ଆଡ଼ଭର୍ଟାଇଜ୍‌ମେଣ୍ଟ ଦେଉଛୁ । ଆପଣ ଆଜି ଗୋଟାଏ ଫୁଲ ପେଜ ଆଡ଼ଭର୍ଟାଇଜମେଣ୍ଟ ନେଇ ଯାଆନ୍ତୁ । ପତ୍ରିକାର ଶେଷ କଭରରେ ପ୍ରକାଶ କରି ଦେବେ । ଦୟାକରି ପ୍ରୁଫ୍‌ଟା ଦେଖାଇ ନେବେ ।"

ଭଦ୍ରବ୍ୟକ୍ତି ଜଣକ ଟିକିଏ ଅନ୍ୟମନସ୍କ ଥିଲେ ।

ପ୍ରକୃତିସ୍ଥ ହୋଇ କହିଲେ —

"କେଉଁ ପତ୍ରିକା କଥା କହୁଛନ୍ତି ?"

"ଆପଣଙ୍କର ସେଇ 'କଳାର କଥା ।' ଆପଣ ଯେ ସେ ପତ୍ରିକାର ସମ୍ପାଦକ ମୁଁ ଜାଣି ପାରି ନ ଥିଲି । କ୍ଷମା କରିବେ । ପତ୍ରିକାଟି ମୂଳରୁ ଶେଷ ପର୍ଯ୍ୟନ୍ତ ପଢ଼ିଲି । ବେଶ୍ ସୁନ୍ଦର ପତ୍ରିକାଟିଏ । ଓଡ଼ିଶାରେ ଏଭଳି ପତ୍ରିକାର ଆବଶ୍ୟକତା ଥିଲା । ଏ ପର୍ଯ୍ୟନ୍ତ ମୋ ଟେବୁଲ ଉପରେ ଆପଣଙ୍କ ପତ୍ରିକାଟି ଅଛି, ଦେଖନ୍ତୁ !"

ସେ ଟିକିଏ ହସିଲେ । ସେ ହସରେ ଭରି ରହିଥିଲା କି ଭଳି ଏକ ବିଦ୍ରୂପ । ମୁଁ ଅପ୍ରସ୍ତୁତ ହୋଇ ଆଡ଼ଭର୍ଟାଇଜମେଣ୍ଟ ଅର୍ଡ଼ର ବୁକ୍ ଉପରେ ଦସ୍ତଖତ କରିବାକୁ ଆରମ୍ଭ କଲି ।

ମୋର ହାତ ମୁଠାରେ ତାଙ୍କର କ୍ଷୀଣ ହାତର ଆଙ୍ଗୁଳିଗୁଡ଼ିକ ଚାପି ସେ କହିଲେ—

"ଆଉ ଆଜ୍ଞା ! ପତ୍ରିକାଟି ବହୁତ ଦିନରୁ ବନ୍ଦ ହୋଇଗଲାଣି !!"···

"କ'ଣ ?! ସମ୍ପୂର୍ଣ୍ଣ ବନ୍ଦ କରି ଦେଲେ !···ଚଳେଇ ପାରିଲେନି ବୋଧହୁଏ ?"

"ହଁ ଯାହା ବି ବିକ୍ରୀ ହେଉଥିଲା ଏଜେଣ୍ଟମାନେ ପଇସା ଦେଲେ ନାହିଁ । ଗ୍ରାହକମାନେ ମଧ୍ୟ ପଢ଼ିବାକୁ ଆଗ୍ରହ ପ୍ରକାଶ କରି ନେଇଗଲେ, କିନ୍ତୁ ଟଙ୍କା ଦେଲେ ନାହିଁ ।"

"ବିଜ୍ଞାପନରୁ କଣ କିଛି ପାଉ ନ ଥିଲେ ?"

"ବହୁତ କଷ୍ଟରେ ବୁଲି ବୁଲି ଗୋଟାଏ ଦୁଇଟା ବିଜ୍ଞାପନ ମିଳୁଥିଲା । ତାହା ଯଥେଷ୍ଟ ହେଉ ନ ଥିଲା । ସେଥିରେ କାଗଜ ଖର୍ଚ୍ଚ ମଧ୍ୟ ଉଠୁ ନ ଥିଲା ।"

"ସରକାରୀ ଅଫିସରେ ମୋର ବହୁ ବନ୍ଧୁବାନ୍ଧବ ଅଛନ୍ତି ! ମୁଁ ଅନ୍ତତଃ ଦୁଇଟି ବିଜ୍ଞାପନ ଯୋଗାଡ଼ କରି ଦେଇ ପାରେ । ତା'ଛଡ଼ା ପ୍ରାଇଭେଟ୍‌ରେ ମଧ୍ୟ ମୋର ଅନେକ ଚିହ୍ନା ପରିଚୟ ଅଛନ୍ତି । ଆପଣ ଆଉ ଥରେ ପତ୍ରିକା ପ୍ରକାଶ କରନ୍ତୁ, ମୁଁ ଆପଣଙ୍କୁ ନିଶ୍ଚୟ ସାହାଯ୍ୟ କରିବି ।"

ସେ ଏକ ଅନାସକ୍ତିଭରା କଣ୍ଠରେ କହିଲେ—

"ହଁ, ସମସ୍ତେ ପ୍ରଥମେ ଏପରି ମୋତେ କହୁଥିଲେ ଆଜ୍ଞା···ସମ୍ବଳ-ହୀନ ଲେଖକ ଜୀବନରେ ପ୍ରକାଶକ ସାଜି, ସାହିତ୍ୟ କ୍ଷେତ୍ରରେ ନୂତନତା ସୃଷ୍ଟି କରି, ସ୍ୱଚ୍ଛଳତାର ଗୌରବ ଆଶା କରିବା ନିରର୍ଥକ । ଅନ୍ତତଃ ପତ୍ରିକା ପ୍ରକାଶ ପରେ ମୋର ଏ ଅନୁଭୂତିଟା ଦୃଢ଼ ହୋଇଛି···।'

—ସେ ଯେପରି ଆଉ କିଛି କହିବାକୁ ଚାହୁଁଥିଲେ···!

ମୋର ଓଠ ଭିତରେ ମଧ୍ୟ ବହୁତ କିଛି ଭାବନା ଅବ୍ୟକ୍ତ ରହି ଯାଉଥିଲା !!

ଉପରେ ସିଲିଙ୍ଗ୍ ଫ୍ୟାନ୍‌ଟା ଖୁବ୍ ଜୋରରେ ଘୂରୁଥିଲା । ଟେବୁଲ ଉପରେ ଥୁଆ ହୋଇଥିବା ପତ୍ରିକାଟିର ମଇଳା ପୃଷ୍ଠାଗୁଡ଼ାକ ପବନରେ ଫଡ଼ଫଡ଼ ହୋଇ ଉଡୁଥିଲା । ବାହାରେ ଘୁମନ୍ତ ରାତିର ଅନ୍ଧାର ଜମାଟ ବାନ୍ଧି ଆସୁଥିଲା !! ରିକ୍‌ସାର ଘଣ୍ଟିର ଶବ୍ଦ ବହୁଦୂରରେ ମିଳାଇ ଯାଉଥିଲା !

"...ରାତି ଗୋଟାଏ ବାଜିଲାଣି ଆଜ୍ଞା ! ହୋଟେଲ ଗୃବଟା ରଖନ୍ତୁ..."

"ଏଁ, ହଁ । ଶୀତଟା କେତେ ବେଶୀ ହେଲାଣି ସତରେ ?" ଫ୍ୟାନଟା ଆଗରୁ ବନ୍ଦ କରି ଦେଇଥିଲେ ଭଲ ହୋଇଥାନ୍ତା...!!



# ପିଲୁ

ସାବୁନଫେଣରେ ବିନ୍ଦୁ ଉପରେ ପଡ଼ିଥିବା ସକାଳର ସୂର୍ଯ୍ୟ କିରଣ ସୃଷ୍ଟି କରି ଲାଗିଥାଏ ନୀଳ-ମାଳ ଇନ୍ଦ୍ରଜାଲ; କିନ୍ତୁ ଗାଁ ଘାସପଡ଼ିଆର ଅଗଣିତ ଶିଶିରବିନ୍ଦୁ ଏହାଠାରୁ ଆହୁରି ସୁନ୍ଦର, ଆହୁରି ଉଜ୍ଜ୍ୱଳ —ସେହି ଶିଶିରଭିଜା ପବନରେ ଥାଏ ଗୋଟାଏ ହାଲୁକା ଭାବ ।

ଧୀରେ ଧୀରେ ଉଠିଲା ପିଲୁ । କଳ ପାଣିରେ ଲୁଗା ଧୋଇ ଶୁଖାଇଦେଲା ତାରରେ । ବାସନତକ ମଜା ହେଇନି । ଆଗଣା ଓଳା ହେଇନି—ଅଣ୍ଟା ସଳଖି ବସିଲା ସେ ।

"କ'ଣ ଏ ପର୍ଯ୍ୟନ୍ତ ମଜା ସରି ନି ? ପାଣି ଅଣା ହେବ ଆଉ କେତେବେଳେ ?—ନିଳୁଟା କାନ୍ଦି କାନ୍ଦି ଗଡ଼ଗଲାଣି—ତାକୁ ଟିକିଏ ଦାଣ୍ଡକୁ ବୁଲାଇ ନେଲୁ ?"—ଶଶୀଦେବୀଙ୍କ ସ୍ୱରରେ ଥିଲା ଦୃଢ଼ତା ।

ଶ୍ରୀକାନ୍ତ ବାବୁ ଟିକିଏ ବିରକ୍ତ ହୋଇ କହିଲେ—"ଆଉ ସେ ବର୍ତ୍ତମାନ ବୁଲାଇ ନେଇ ପାରିବ ନାହିଁ । ଅଫିସ୍ ବେଳ ହେଲାଣି । ପାଣି ଅଣିଲେ ଶୀଘ୍ର ମୁଁ ଗାଧୋଇବି—ସେ କ'ଣ ମେସିନ୍ ହୋଇଛି କି ?"

ଶଶୀ ଦେବୀ ଅଭିମାନଭରା ଆଖି ହଲେଇ କହିଲେ—"ତମେ ସେ ଟୋକାଟାକୁ ମୁଣ୍ଡରେ ମୁଣ୍ଡାଇଛ । ତା' ବାପା ମୋ ପାଖରୁ ହକ ଶହେ ଟଙ୍କା ନେଇଛି । ସେ ମୋ କଥାରେ ଚଳିବ । ତମେ ମଝିରୁ ପାଟି ଫିଟାଇ ପାରିବନି କହୁଛି ।"

"ଟଙ୍କାଟା ବୋଧହୁଏ ତମ ବାପ ଘରୁ ଆଣି ନ ଥିଲ ।"

"କ'ଣ ହେଲା ? ମୋ ବାପ ଘର ଉଧାଉଛ ? ହଇହେ, ଟଙ୍କାଟା ମୁଁ ମାଳି ବନ୍ଧା ପକାଇ ଦେଇ ନ ଥିଲି ? ତମ ଟଙ୍କା ହେଇଥିବ ତ ?"

"ମାଳଟା ଅବଶ୍ୟ ତୁମ ଘର ବଲଟରୁ ପଠାଇ ନ ଥିଲେ ବୋଲି ମୋର ମନେ ହୁଏ !"

"ହଉ ବାବା ତୁମକୁ ଶହେ ଜୁହାର !...ମୁଁ ହେଲି ଏ ଘରେ ପୋଇଲି । ଆଉ"...ଶଶୀ ଦେବୀ କାନ୍ଦିବାକୁ ଆରମ୍ଭ କଲେ !

"ହୁଃ,—ଆରମ୍ଭ ହେଲା ଏଥର ।" ଶ୍ରୀକାନ୍ତ ବାବୁ ମୁଣ୍ଡରେ ତେଲ ଲଗାଇ ବାହାରି ଗଲେ ଗାଧୁଆ ଘରକୁ ।

—ଏହିପରି ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଗଣ୍ଡଗୋଳ ଆରମ୍ଭ ହୋଇ ଯାଏ । କଥାଟା ହେଲା— ଶ୍ରୀକାନ୍ତ ବାବୁ ପିଲୁ ପ୍ରତି ଟିକିଏ ସଦୟ ହୋଇ ଥିଲେ । ପିଲଟା ବାପ ମା' ଛାଡ଼ି ଆସିଛି—ମୁଠାଏ ଖାଇବାକୁ ଦେଉଛନ୍ତି ବୋଲି ତାକୁ ଏତେ କାମ ଦେବାଟା ସେ ପସନ୍ଦ କରି ପାରନ୍ତି ନ । ଆଉ ଶଶୀ ଦେବୀ ମାଳ ବନ୍ଧା ପକାଇ ପିଲୁକୁ କିଣିଥିବା ହେତୁ ଘର ଅଧିକାର ଦେଖାନ୍ତି ତା' ଉପରେ ।

ପିଲୁ କାମ କରିବାରେ ଧକେଇ ଯାଏ । ବାସନ ଗଦା ହେବା ଦେଖିଲେ ସେ ଆଗ ବୁହେ କାନ୍ଦେ – ତା'ପରେ ମାଜି ବସେ । ଶଶୀ ଦେବୀ ଏ ସବୁ ଲକ୍ଷ୍ୟ କରି ପାରନ୍ତି ନ; କିନ୍ତୁ ଶ୍ରୀକାନ୍ତ ବାବୁ ବେଶ୍ ଲକ୍ଷ୍ୟ କରିଥାନ୍ତି । ପିଲୁର କାମ ଟିକିଏ ହାଲୁକା ହେବା ପାଇଁ ସେ ଆଉ ଗୋଟାଏ ଚାକର ଆଣିଥିଲେ;—କିନ୍ତୁ ଶଶୀ ଦେବୀ ରଖିବାକୁ ରାଜି ହୋଇ ନ ଥିଲେ ।

"କାହିଁକି ମ ? ୧୨ ବର୍ଷର ଟୋକାଟାଏ ଅଛି । କ'ଣ କରୁଛି କହିଲ ? ଲୋକେ ଘରେ ପିଲା କିଣି ରଖିଛନ୍ତି ଯେ ସକାଳୁ ରାତିଯାଏ ଖଟାଉଛନ୍ତି – ଆଉ ଖାଇବାକୁ ଦେଉଛନ୍ତି ପେଜ ସାଙ୍ଗକୁ ମୁଠାଏ ଭାତ । ମୋ ଘରେ ଇଏ ମାଛଠାରୁ ମାଉଁସ ପର୍ଯ୍ୟନ୍ତ ଗିଳି କ'ଣ ଭଲା ଅଧିକା କାମ କରୁଛି କହିଲ ?"—ଶ୍ରୀକାନ୍ତ ବାବୁ ଅଧିକାଂଶ ସମୟରେ ନୀରବ ହୋଇ ଯାଆନ୍ତି । କାରଣ ଅଶାନ୍ତି ସେ ଭଲ ପାଆନ୍ତି ନାହିଁ । ଆଉ ଯେତେବେଳେ ବିରକ୍ତ ହୁଅନ୍ତି, ଗୃହିଣୀଙ୍କ ଆଖିରୁ ଝରେ ଲୁହ ।

ଅମର ଗାଁର ବଣ୍ଡ ରଇତ ଥିଲା ପିଲୁର ବାପା । ତିନୋଟି ହଳ ଦୁଇଟି ହଳିଆ ନେଇ ଚାଷ କରୁଥିଲା । ରୁଦରମୁଣ୍ଡା ଜମି; କିନ୍ତୁ ଦୁଇ ବର୍ଷ ଧରି ଇନ୍ଦ୍ରଦେବତାଙ୍କ କୋପ ଦୃଷ୍ଟି ପଡ଼ିଲା ତା'ର ଜମି ଉପରେ । ଜମି ବନ୍ଧା ପକାଇବା ଛଡ଼ା କୁଟୁମ୍ବ ଚଳାଇବା ପାଇଁ ଅନ୍ୟ ଉପାୟ ନ ଥିଲା ତା'ର । ଗଲା ବର୍ଷ ପଡ଼ିଲା ମରୁଡ଼ି । କାହାରି ଖାଦ୍ୟ ହୋଇନି । କୁଲି ମଜୁରି ମଧ୍ୟ କେଉଁଠି ମିଳିଲା ନାହିଁ । ଘରର ସବୁ ଜିନିଷ ବିକା ହୋଇଗଲା; ଗାଁ ଗାଁ ଧରି ଖାଇବାକୁ ନ ପାଇ ଲୋକମାନେ ନିଜ ନିଜ ସନ୍ତାନମାନଙ୍କୁ ଶେଷରେ ବିକି କରିବାକୁ ଲାଗିଲେ ।

ପିଲୁର ବାପା ମହୁଲ ଓ ତେନ୍ତୁଳି ମଞ୍ଜି ଖୁଆଇ କେତେଦିନ ପିଲାମାନଙ୍କୁ ବଞ୍ଚାଇ ଆଣିଲା । କିନ୍ତୁ ଦିନ ପରେ ତା' ମଧ୍ୟ ଆଉ ମିଳିଲା ନାହିଁ ।

ସମସ୍ତେ ପିଲା ବିକ୍ରୀ କରି ଦେଉଛନ୍ତି ! ତା'ର ଛଅଟା ପିଲା—ଜଣକୁ ବିକ୍ରୀ କରିଦେଲେ କ୍ଷତି କ'ଣ ? ପିଲୁର ବାପା ଭାବି ଲାଗିଲା ।

ପିଲା ବିକିବ ? ଜନ୍ମ କରିଛି ସେ । ନା ନା, ସେ ପାରିବନି ! ମନ ତା'ର ମାନିଲା ନାହିଁ—

କିନ୍ତୁ ଦୀର୍ଘ ସାତଦିନ ଧରି ପିଲୁର ବାପା ଆଦରର ସନ୍ତାନମାନଙ୍କୁ କିଛି ଖାଇବାକୁ ଦେଇ ପାରି ନ ଥିଲା; ଅବଶେଷରେ ଯେଉଁଦିନ କୋଳଛୁଆଟା ଖାଇବାକୁ ନ ପାଇ ମରିଗଲା, ପିଲୁର ବାପା ସ୍ନେହର ସମସ୍ତ ପ୍ରତିବନ୍ଧକ ଭାଙ୍ଗି ଦେଇ ପିଲୁକୁ ଧରି ବାଧ୍ୟ ହୋଇ ସେ ଦିନ ପହଞ୍ଚିଲା ଶ୍ରୀକାନ୍ତ ବାବୁଙ୍କ ପାଖରେ ।

ଶ୍ରୀକାନ୍ତ ବାବୁ ଥିଲେ ତହସିଲ୍‌ଦାର । ଅମର ଗାଁ ପରିଦର୍ଶନ କରିବାକୁ ଯାଇଥିଲେ ସେ ଦିନ । ଶୁଣିଲେ ସେ ଗାଁର ଅଧିକାଂଶ ଖାଇବାକୁ ନ ପାଇ ନିଜ ସନ୍ତାନମାନଙ୍କୁ ବିକ୍ରୀ କରି ଦେଉଛନ୍ତି । ତାଙ୍କର ହୃଦୟ ଦୟାରେ ଭରିଗଲା; ପିଲୁ-ବାପାର କରୁଣ ଗୁହାରି ତାଙ୍କୁ ବ୍ୟସ୍ତ କରି ପକାଇ ଥିଲା ।

"ହଜୁର ! ଏ ପିଲା କେରଖ ଆଉ୍ ଶହେ ଟଙ୍କା ଦିଅ ମହାପ୍ରଭୁ । ମୋର ପିଲା-କୁଟୁମ୍ବ ଶୋକେ ମରି ଗଲେ ନା, ସାତ ପୁରୁଷ କୁଟୁମ୍ବ, ଇନ୍ଦ୍ରଦେବତା ମାରି ଦେଲା ମତେ । କାଣ ଖାଇବାକେ ଦେମି ?"

ଶ୍ରୀକାନ୍ତ ବାବୁ ବ୍ୟସ୍ତ ହୋଇ କହିଲେ—"ତୋ ପିଲାକୁ ବିକି-ଦେବୁ ନିଶ୍ଚୟ ?"

"ହଁ ହଜୁର, କୁଳିଭୂତ ନାଇ—ଏସ୍ ଖାଦ୍ ନାଇ । କେନ୍ତା ଜୀଇଁମି । ଇତାକେ ବନ୍ତା ଗେଲେ ନେ ରଖିଥିଲା ହଜୁର; ଗଛନେ ମୋର ପାଖେ ଶୁଇସି...!"—ପିଲୁର ବାପା ଆଉ କହି ପାରି ନ ଥିଲା । ଆଦରର ସନ୍ତାନକୁ ପେଟ ବିକଳରେ ବିକି-ଦେଉଥିବାର ବେଦନା ଗୁମୁରି ଉଠୁଥିଲା ତା'ର ହୃଦୟ ଭିତରୁ ।

"ଆଚ୍ଛା, ତତେ ଯଦି ସେମିତି ଶହେ ଟଙ୍କା ଦେଇ ଦିଏ, ତୁ କାହାକୁ ବିକିବୁ ନ ତ ତାକୁ ?"

ପିଲୁର ବାପା ନୀରବ ରହିଲା । କିଛି ସମୟ ପରେ କହିଲା, "ନେଇ ହଜୁର୍, ତମେ ଏ ପିଲାକେ ନିଅ ନା । କେ ଜାନେ, ପେଟର୍ କାଜେ ଆଉ ଦିନେ ପୁନି ତାକେ ବିକି ଦେମି । ଆଉ କେନ୍ ନେଲେ ମୋର୍ ପିଲା ମରି ପୁନି ଯିବା । ବିନେ ଖାଇବାକେ ନାଇ ଦିଏ । ତମର ପାଁ-ତଲେ ପଡ଼ୁଛେଁ ହଜୁର, ତମେ ଇତାକେ ନିଅ । ମୋର୍ ପିଲା ଜୀଇଁ ଥାଉ ତୋ ।"

ଶ୍ରୀକାନ୍ତ ବାବୁଙ୍କ ଆଖିରେ ପାଣି ଜମି ଆସିଲା; ସେ ରାଜି ହୋଇ ଗଲେ ।

"ଅଚ୍ଛା ତୁ କାଲି ଗଡ଼୍‌କୁ (ସହର) ଯିବୁ । ମୋର ଘର ଦେଖିଛୁ ତ । ମାଆଙ୍କ ପାଖରୁ ଟଙ୍କା ନେଇ ପୁଅକୁ ଛାଡ଼ିଦେଇ ଆସିବୁ । ବୁଝିଲୁ ।"

ପିଲୁର ବାପ ଶ୍ରୀକାନ୍ତ ବାବୁଙ୍କ ଗୋଡ଼ତଳେ ପଡ଼ି ଯାଇଥିଲା ସେଦିନ । ଶ୍ରୀକାନ୍ତ ବାବୁ ସରକାରୀ କର୍ମଚାରୀ; ପିଲା କିଣି ସେ ପସନ୍ଦ କରି ପାରନ୍ତି ନି; କିନ୍ତୁ ସେଦିନ ସେ ଭାବିଲେ ପିଲୁର ବାପା କଥାରେ

ଘରେ ଜ୍ୱରେ ଥିଲେ ପୁଣି ବଢ଼ିଲା, ଦେଖିଲା ଯେଉଁମାନେ ଗଡ଼ିଲା—ସବୁଠାରୁ ଦୁର୍ବଳ ଅଂଶକୁ ବିଚାର କରି ଗତି ଚଲାଇଲେ । ଏପରି କ୍ଷମତା ବହିଥିବା ପିଲାମାନେ ଗୁଣ ଓ ଦୋଷରେ ଉପଯୁକ୍ତ ଅଂଶ ନେଇ ଯୁକ୍ତ ଅଟନ୍ତି ।

ଘର ହୋଇ ସେ ଅନ୍ୟାୟ କରି ନାହାନ୍ତି ବରଂ ଏକ ମାନବିକ କାମ କରିଛନ୍ତି । ପିଲୁ ଅନ୍ତତଃ ଭଲରେ ତାଙ୍କ ପାଖରେ ରହି ପାରିବ ତ !

× × ×

"ହଇରେ ପିଲୁ, ମାଛ ତରକାରି ଖାଉନୁ ? ତରକାରି ଭଲ ଲାଗୁନି କି ?" ଶ୍ରୀକାନ୍ତ ବାବୁ ପିଲୁର ତରକାରି ଗିନାକୁ ଚାହିଁ ପଚାରିଲେ ।

"ନେଇ ହଜୁର, ବନେ ନାଇ ଲାଗିବାର ।"

"ଆଶ୍ଚର୍ଯ୍ୟ ! ତରକାରିଟା ବଢ଼ିଆ ହୋଇଥିଲା ! ତୋ ମା ଆଉ କେମିତି ରାନ୍ଧେ କରେ ?"

"ମାଛ୍ ପୋଡ଼ ଦେସି, ନୁନ୍ ସଁଗେ ମଡ଼ଆ ପେଟେକେ ଖାଇଲେ-ବନେ ଲଗ୍‌ସି ହଜୁର !"

"ଆହା ହା ହା ସତେ ତ ! ଘୁଷୁରିକୁ ପାଚିଲା କଦଳୀ ! ମସଲା ସୁଆଦ ଜାଣିବୁ କେଉଁଠୁ ।" ରନ୍ଧା ଘରୁ ଶଚୀଦେବୀ ମନ୍ତବ୍ୟ ଦେଲେ । ପିଲୁ ଟିକିଏ ଅପ୍ରସ୍ତୁତ ହୋଇ ପଡ଼ିଥିଲା ।

ସେ ଦିନ ପିଲୁର ମନେ ପଡ଼ୁଥିଲା ଗାଁର ସମସ୍ତ ସ୍ମୃତି । ନଈରୁ ଗେଣ୍ଡା ଗୋଟାଇବା, ମାଛ ଧରିବା—ତା'ର ହୋଇଥାଏ ପ୍ରଧାନ ବେଉସା । ଅଣ୍ଟାରୁ କରିଆ-ଖଣ୍ଡିକ ଫିଟାଇ ଦେଇ ପଶିଯାଏ 'ଜୋର୍' (ନଈ) ଭିତରେ ପଲଶ ପଥର ତୋଳି 'ଦନା' କରି ମାଛ ଦି ଚେଲା ଧରି ସେ ଫେରେ ଘରକୁ । ତା' ମା ସେତକ ନେଇ ଜଡ଼ା ତେଲ ଟିକିଏ ପକାଇ ଭାଜିଦିଏ, ନ ହେଲେ ନଡ଼ା ପୁଞ୍ଜିଏ ପକାଇ ପୋଡ଼ିଦିଏ; କଂସାଏ ମାଣ୍ଡିଆ ଜାଉ ଆଉ ଗିନାଏ ମାଛ ଥୋଇ ଦିଏ ମଝିରେ । ଭାଇ ଭଉଣୀମାନେ 'ମାଛ୍ ମାଛ୍' ପାଟି କରି ଘେରି ଯାଆନ୍ତି କଂସା ଚାରିପଟେ ।

ବିଲରୁ ଧାନକଟା ସରିଲେ ଟୋକାଙ୍କ ଧରି ପିଲୁ ତା' ସାଙ୍ଗ-ମାନଙ୍କ ସାଥିରେ ଯାଏ ଧାନ 'କୋଲ୍‌କିବା' (ଗୋଟାଇବା) ପାଇଁ । ପ୍ରାୟ

ଦୁଇ ସେର ଧାନର ଶିଂଧା ଟୋକେଇ ଆଣି ସେ ଚକଟି ପକାଏ ଗୋଡରେ । ଧାନଡକ ଗାଁ ମୁଣ୍ଡରେ ଥିବା ଗୁଣ୍ଡୁଚି ମା'କୁ ଦେଇ ମୁଢ଼ି କମ୍ବା ଚୂଡ଼ା ନେଇ ଆସେ । ଘରେ ସବୁ ଭାଇଭଉଣୀ ମିଶି ଆନନ୍ଦରେ ଖାଇ ଲାଗନ୍ତି ।

ପିଲୁର ଗୃହ ଭାଇ, ଦୁଇ ଭଉଣୀ । ଭଉଣୀମାନେ ବଡ଼ । ଭାଇ ସବୁ ତା'ଠୁ ତଳେ । ପିଲୁଟା ବଡ କାମିକା ଓ କଷ୍ଟସହିଷ୍ଣୁ ପିଲା । କେତେ ପାହାଡ଼ ଝରଣା ବୁଲି ଫୁଲ ଗୋଟାଇ ଆଣେ ବଡ଼ ଭଉଣୀ ସରଳା ପାଇଁ । ସମୟେ ସମୟେ ପାଣି ନେଇ ଆସେ ଜୋରୁ । ବାପା ମା ଭାରି ଖୁସୀ ହୁଅନ୍ତି ତା' ଉପରେ । ଗ୍ରେଠ ଗ୍ରେଠ ଭାଇମାନଙ୍କୁ ନେଇ ସେ ଖେଳ ବସେ ମହୁଲ ଗଛ ମୂଳେ କମ୍ବା ପଥର ଗୁଣ୍ଡା ଉପରେ । ରାତି ହେଲେ ସାଥୀମାନଙ୍କ ସାଙ୍ଗରେ ଖୋଲା ଆକାଶ ତଳେ ଚନ୍ଦ୍ର କରଣରେ ଗୀତ ଗାଇ ନାଚେ ।

ପିଲୁ ଭଲ ନାଚ ଜାଣେ । ଗାଁର ବୁଢ଼ା ଗଣ୍ଡା (ଚଉକିଦାର) ତାକୁ ବଡ଼ ଆଦର କରି 'କୁଲିଆକନ୍ଦା' ଖାଇବାକୁ ଦିଏ । ବାପବକ ଭାରି ଖୁସି ଲାଗେ ତା'ର ଗ୍ରାମ୍ୟ-ଜୀବନ । ନବେଲା ସମୟରେ ସେ ଲେଉଟାଇ ଲାଗେ ତା'ର ଅଖାଡର ସମସ୍ତ ସ୍ମୃତି । ଆଖିପତା ଲୁହରେ ଭରିଯାଏ !—ଶଶୀ ଦେବୀ ନ ଥିବା ସମୟରେ ଶ୍ରୀକାନ୍ତ ବାବୁ କେତେ ବୁଝାଇ ଲାଗନ୍ତି ତାକୁ ! × × ×

ଏଥିଭିତରେ ଶ୍ରୀକାନ୍ତ ବାବୁଙ୍କର ବ୍ରହ୍ମପୁର ବଦଳି ହୋଇ ଯାଇଛି । ପିଲୁ ଆସିଛି ସାଙ୍ଗରେ । ଏଠାକାର ଭାଷା ତାକୁ ଭାରି ଅଡୁଆ ଲାଗୁଛି । 'ଗଡ଼'ରେ ଥିବା ସମୟରେ ତା'ର ବାପା ମା ପ୍ରତି ହାଟ ପାଳିକୁ ଦେଖିବାକୁ ଆସୁଥିଲେ । ଏଠାରେ କେହି ନାହିଁ ତା'ର । ବର୍ତ୍ତମାନ ସେ ନିରୁପାୟ !!!

"ଏଇଟି ଘୋଡ଼ି ହୋଇ ଶୋଇଚୁ କିଆଁ ? ଯା ଚଞ୍ଚଳ ଦୋକାନକୁ । ଅରୁଆ ଗୃଉଳ, ଘିଅ, ନଡ଼ିଆ ନେଇ ଆସିବୁ । କାଲି ପୁଷ ପୂର୍ଣ୍ଣିମୀ ମଣ୍ଡା ପିଠା ହେବ ।"—ଶଶୀଦେବୀଙ୍କ ପାଟିରେ ଚମକି ପଡ଼ିଲା ପିଲୁ । ପୁଷ୍ ପୁନ !!

ତିନି ଦିନ ଜରରେ ମଧୁ ପିଲୁ ଥରି ଥରି ଗଲା ଦୋକାନକୁ । ପୁଷ୍ ପୁନି !—ଏହି ଦିନ ସେ ଗାଁରେ ଛେର-ଛେରା ମାଗିବାକୁ ଯାଏ । ସାଙ୍ଗ ସାଥୀମାନେ ଦଳଦଳ ହୋଇ ଯାଆନ୍ତି—ତା ସହିତ । କାରଣ ପିଲୁ ଭଲ ଗୀତ ଗାଏ । ହାତରେ ଖଣ୍ଡିଏ ବାଡ଼ି ଧରି ସେମାନେ ଛେର୍ଛେରା ଗୀତ ଗାଇ ଲାଗନ୍ତି । "ଆଜି ପୁନି, କାଲି ପୁନି, ଫଟାଫଟି ଜୁନାଜୁନି । ଛେର୍ ଛେର୍ ଛେରା ।" ପିଲାମାନେ ଧାନ, ଚାଉଳ ଓ ପଇସା ଘର ଘର ବୁଲି ମାଗି ଆଣନ୍ତି । ଘରେ ପିଲୁର ମା, ଧାନ କୁଟି ଚାଉଳ କରି ମଣ୍ଡ ପିଠା କରିଦିଏ । ଭାଇ ଭଉଣୀ ମିଶି ଗନ୍ଧୁଆ (ଦାଉଡ଼ି) ଖଟରେ ବସି ପିଠା ଖାଇ ଲାଗନ୍ତି । ରାତି ହେଲେ ମଦ ଟିକିଏ ପିଇ ତାବ୍ ବାଜା ଧରି ପିଲୁ ଖଳାରେ ନାଚ କରେ । ତା'ର ସାଙ୍ଗ—ଶଙ୍କା, ମେଟ୍ନା, ଲରି ପ୍ରଭୃତି ସମସ୍ତେ ନାଚରେ ମାତି ଯାଆନ୍ତି । କେତେ ଗୀତ, କେତେ ବାଜା, ଭାରି ଖୁସୀ ଲାଗେ ଏହି 'ପୁଷ୍ ପୁନି' !— ସାରା ବର୍ଷ ଧରି ପିଲୁ ଅପେକ୍ଷା କରିଥାଏ ଏହି ଦିନ-ଟିକୁ । ଫସଲ ଅମଳ ଶେଷରେ କୃଷୀ ଜୀବନରେ ଏହି ଆନନ୍ଦର ଦିନଟି ।

...ହଠାତ୍ ହାତରୁ ଘିଅ ବୋତଲଟି ଖସି ପଡ଼ି ଭାଙ୍ଗିଗଲା ! କ'ଣ କଲା ସେ ? ପିଲୁ ଭୟରେ ଥରିବାକୁ ଲାଗିଲା । ଘରକୁ ଯାଇ ସେ କ'ଣ କହିବ ? ଜରର ତାତିରେ ଜଳନ୍ତା ଆଖିରୁ ତା'ର ତାତିଲା ଲୁହ ଧାର ଛୁଟି ଆସିଲା । ଅଧେ ଘିଅ ଲାଗିଥିବା ଭଙ୍ଗା ବୋତଲଟିକୁ ତଳୁ ଗୋଟାଇ ସେ ଆସିଲା ଘରକୁ ।

"ମା' । ଘି ଗଡ଼ି ଗଲା—ମୋର ଦୋଷ ନାହିଁ ।"

"ଆଏଁ କ'ଣ କହିଲୁ, ଦୋଷ ହୋଇଛି ? ହାଁ, ମୋର ଗୁରିଙ୍କର ଘିଅ ? ସବୁ ଗଡ଼ି ଦେଲୁ ? ଏତେ ଦିମାକ୍ ତୋର ? ରହ, ଆଜି ତୋ ଗେଲବସରପଣିଆ ଛଡ଼େଇ ଦେଉଛି—ବଦମାସ୍ କୋଉଟିକାର !" ରାଗରେ ଦଉଡ଼ି ଆସି ପିଲୁର କାନ ମୋଡ଼ି ଚାପୁଡ଼ା ଉପରେ ଚାପୁଡ଼ା ବସାଇ ଲାଗିଲେ ଶଶୀ ଦେବୀ ।

"ହାଁ ହାଁ ।" ବୈଠକ ଘରୁ ଫାଟି କରି ଆସିଲେ ଶ୍ରୀକାନ୍ତ ବାବୁ । "ଏତେବଡ ପିଲାଟାକୁ ହାତ ଠେକ ମାରୁଛ ? ଗଲେ ଗଲା ତମର ଘିଅ ।

ଯାହା ପଇସା ମୋଠାରୁ ନେଇ ଯାଉନ ? ବସ୍ତିର ବାପ-ମା ଗୁଡ଼ା ଆସିଛି, ତନଦନ ଜରରେ ସେ କାମ କରୁଛି । ତମର ଟିକଏ ମାତ୍ର ହୃଦୟ ନାହିଁ ? ହୁଁ—ମିଲୁ, ବୁଲୁ କଏ, ଆଉ ପିଲୁ କଏ ?"

ଶ୍ରୀକାନ୍ତ ବାବୁଙ୍କ ଧମକରେ ଶଶୀ ଦେବୀଙ୍କ କ୍ରୋଧ କମି ଆସିଲା । ପିଲୁ ତଳେ ପଡ଼ି ଯାଇଥିଲା —ମାଡ଼ର ଜୋର୍ ସମ୍ଭାଳି ନ ପାରି । ଶ୍ରୀକାନ୍ତ ବାବୁ ତାକୁ ଉଠାଇ ନେଲେ ଆର ଘରକୁ ।

ପିଲୁ ଛାଙ୍କୁ ସତରେ ଜର ହେଉଥିଲା । କେତେ ଜୋର୍‌ରେ ଯାଇ ମାରି ପକାଇଲେ ସେ ? ପିଲୁଟାର ଯଦି କ'ଣ ହୋଇଯାଏ ?—ପିଲୁ ପ୍ରତି ଶଶୀ ଦେବୀଙ୍କର ଯେତିକ ରାଗ ହୁଏନି, ରାଗ ହୁଏ ସ୍ୱାମୀଙ୍କ ଉପରେ । କାରଣ ଶ୍ରୀକାନ୍ତ ବାବୁ ପିଲୁଙ୍କୁ ଟିକଏ ଅଧିକା ସ୍ନେହ କରନ୍ତି । ସମୟେ ସମୟେ ଶଶୀ ଦେବୀ ଭାବନ୍ତି, ଶ୍ରୀକାନ୍ତ ବାବୁ ଯଦି ପିଲୁ ଉପରେ ଟିକଏ ବିରକ୍ତ ହୁଅନ୍ତେ—ସେ ନିଶ୍ଚୟ ତାକୁ ପୁଅଠାରୁ ବଳି ସ୍ନେହ କରନ୍ତେ; କିନ୍ତୁ ଏଣୁ ଅଭିମାନ ବଢ଼ି ଚାଲେ । ଶେଷରେ ସମସ୍ତ ରାଗ, ଅଭିମାନ ପିଲୁ ମୁଣ୍ଡରେ ଛୁଟେ । ନିରୀହ ପିଲୁ ନୀରବରେ ସବୁ ସହ୍ୟ କରି ନିଏ ।

*            *            *

"ନେରେ ପିଲୁ ପୁଷମଣ୍ଡା ଖଣ୍ଡେ ଖା ।"—ଗତକାଲି ମାରିଥିବା ହେତୁ ଭାରି ଆଦରରେ ପିଲୁ ହାତକୁ ବଢ଼ାଇ ଦେଲେ ଶଶୀଦେବୀ ।

"ନାଇ ମା' ନେଇ ଟେଁ—ଦନେ ନାଇ ଲାଗେ ।"

'କ'ଣ ହେଲା ଖାଇବୁନି ? ଚାକର ଟୋକାଟାର ପୁଣି ଅଭିମାନ ଦେଖ ?"—ଆଜି ତା'ପ୍ରତି ଦୟା କରିବାକୁ ଚାହିଁଥିଲେ ମଧ—ଶଶୀ-ଦେବୀ ପୂର୍ବପରି ପାଟିକରି ଉଠିଲେ । "ଓଃ ! ପିଠା ଭଲ ଲାଗେ ନି ! ମୁହଁ ଦେଇଛନ୍ତି ତ । ମୋ ସବୁରି ରହିବ କି ?" ଶେଷ ଦୁଇ ପଦ ବୈଠକ ଘର ଆଡ଼କୁ ଲକ୍ଷ୍ୟ କରି ମୁହଁ ଛୁଆଡ଼ି ଚାଲିଗଲେ ଶଶୀ ଦେବୀ ।

ପିଲୁ କାନ୍ଦୁଥିଲା । ସେ ମନେ ମନେ ତୁଳନା କରୁଥିଲା —ଗତ ବର୍ଷର 'ପୁଷ୍‌ପୁନି' ଆଉ ଗତ ଦିନର ପୌଷପୂର୍ଣ୍ଣିମା·· ······

ଶ୍ରୀକାନ୍ତ ବାବୁ ବୈଠକ ଘରେ ବସି ସବୁଶୁଣୁଥିଲେ । ସେ ଜାଣି ପାରିଲେ, ପିଲୁ ଲୁଚେଇ ଲୁଚେଇ କାନ୍ଦି ଲାଗିଛି । ହୁଏତ ତା'ର ଘର କଥା ମନେ ପଡୁଛି—କମ୍ବା ଦେହ ଭଲ ଲାଗୁ ନାହିଁ । ତାଙ୍କୁ ବଡ଼ କଷ୍ଟ ଲାଗିଲା । ଧୀରେ ଧୀରେ ସେ ଉଠିଲେ ଚଉକି ଉପରୁ ।

ଶଶୀ ଦେବୀ ଠାକୁର ଘରେ ବସିଥାନ୍ତି । ପିଲୁଟା ଶୋଇଥାଏ । ବୁଲୁ ବାଣ୍ଡକୁ ଖେଳି ଯାଇଛନ୍ତି ବୋଧହୁଏ । ଶ୍ରେଷେଇ ଘରର ପରାତରେ ଥୁଆ ହୋଇଥିବା ମଣ୍ଡା ପିଠାରୁ ଗୋଟେ ହାତରେ ଧରି ଶ୍ରୀକାନ୍ତ ବାବୁ ଉଠାଇଲେ ପିଲୁକୁ ।

"ନେ'ରେ ପିଲୁ ମଣ୍ଡା ଖାଇଦେ—ମୁଁ ବସିଛି । କ'ଣ ଜର ହୋଇଛି ? ହଉ ମୁଁ ପଛକୁ ଔଷଧ ଆଣି ଦେବ । ନେ ଆଗ ଖାଇ-ଦେଲୁ ?"—ମଣ୍ଡା ପିଠାରୁ ଖଣ୍ଡିଏ ପାଟିରେ ଗୁଞ୍ଜି ଦେଲେ ଶ୍ରୀକାନ୍ତ ବାବୁ ।

ପିଲୁର ଯେପରି ମନେ ହେଲା ତା ବାପା ପାଖରେ ବସାଇ ତାକୁ ମଣ୍ଡାପିଠା ଖୋଇ ଦେଉଛନ୍ତି ! ସେ ବର୍ଷ ପୌଷ ପୂର୍ଣ୍ଣିମୀ ଦିନ ଏମିତି ଜର ହେଇଥିଲା । ତା' ବାପା କେତେ ଆଦର କରି ପିଠା ଖୋଇ ଦେଇଥିଲା···। ହଠାତ୍ ଶ୍ରୀକାନ୍ତ ବାବୁଙ୍କର ଗୋଡ ଦୁଇଟି ଧରି କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା ପିଲୁ ।

"କାହିଁକି ଏମିତି କାନ୍ଦୁଛୁ ? ଛି—କାନ୍ଦ୍‌ନା—ଖାଇଦେ ।"

ପିଲୁ ଟିକିଏ ସାହସ ପାଇ ଖଣ୍ଡି ଖଣ୍ଡି ଭଙ୍ଗା ଗଳାରେ କହି ଲାଗିଲା । "ହଜୁର, ପୁଷ୍‌ପୁନିକେ ମୋର ଭାଏ ଭଏନ୍ ମନେ କେତେ ଖୁସି କରୁଥିମେଁ···ଛେର୍ ଛେରା ଆନିଥିମେଁ···।

ଶ୍ରୀକାନ୍ତ ବାବୁ ସାନ୍ତ୍ୱନା ଦେବା ଭଲ ଥାପୁଡ଼େଇ ଲାଗିଲେ ।

···ଏମୁ ବଚନ ଶୁଁ ଦୁ ହେଇଛେ···ବାପା ମତେ ଧକା ଦେଲା ହଜୁର···ବାପା ମତେ··· !!! ସେ ଆଉ କହି ପାରିଲା ନି ।

ଶ୍ରୀକାନ୍ତ ବାବୁଙ୍କ ହୃଦ ଭିତରଟା କରୁଣ ହୋଇ ଉଠିଲା । ପିଲୁକୁ ବୁଲୁ ଆସନରେ ରଖି ସେ କଳ୍ପନା କରି ଲାଗିଲେ ତାଙ୍କର ପିତୃହୃଦୟ ସହିତ ପିଲୁ ବାପାର ପିତୃହୃଦୟ । ସେ ଦିନ ପିଲୁ ବାପାର ହାତ ଦିଓଟି ଜାବୁଡ଼ି ଧରି କେତେ କାନ୍ଦୁଥିଲା; ତାର ବାପାର ଆଖିରୁ ବୋହି ଯାଉଥିଲା ଅଜସ୍ର ଲୁହ···।

ପିଲୁ ଆଜି ଚାହୁଁଛି ଫେରିଯିବା ପାଇଁ ତା'ର ବାପ ମା' କୋଳକୁ । କଳାହାଣ୍ଡିର ସେହି ପରିଚିତ ପାହାଡ ତଳ ଜଙ୍ଗଲ ଭିତରେ ଧାଇଁ ବୁଲିବାକୁ, ସାଙ୍ଗ ସାଥୀ ମେଳରେ ଚନ୍ଦ୍ରକିରଣରେ ତାଳ ଧରି ନାଚିବାକୁ ତା'ର ପ୍ରାଣ ବ୍ୟାକୁଳ ହୋଇ ଉଠୁଛି ।

ଖୋଲା ଆକାଶର ଚଢ଼େଇଟିକୁ ପିଞ୍ଜରାରେ ବାନ୍ଧି ରଖିଲେ ସେ ତ ଆଉ ତା'ର କଳଗାନ ଫୁଟାଇ ପାରିବ ନି !···

"ହଇରେ ପିଲୁ—ଘରକୁ ଯିବୁ ?"

ପିଲୁ ନୀରବ !!

"ହଁରେ, ମୁଁ ତତେ ଛାଡ଼ି ଦେବି ।" କଣ୍ଠ ତାଙ୍କର ଅସ୍ୱାଭାବିକ !

"ହଜୁର । ମୋର ବାପା ଠଙ୍କା ଖାଇଛେ ।"

"ଶହେ ଠଙ୍କା ତ ନେଇଛି । ତୁ ଏତେ ଦିନ ରହିଲୁଣି । କ'ଣ ଠଙ୍କା ଶୁଝା ହୋଇନି ଯେ ମୁଁ ଜୀବନଯାକ ତୋତେ ରଖିବି ? ତୁ କାନ୍ଦ୍ ନା, ମୁଁ ତତେ ନେଇ ଗାଁରେ ଛାଡ଼ି ଦେଇ ଆସିବି ।"

ପିଲୁ ପ୍ରଥମେ ବିସ୍ମିତ ହୋଇ ଚାହିଁ ରହିଲା—କିଛି କ୍ଷଣ ପରେ କହିଲା—"ନାଇଁ ହଜୁର୍ ! ମୁଁଇ କେମିତି କରି ଯିବି ? ମା କାଣା କହେବେ ?

ମୋର ବାପା ଝଙ୍କା··।"

"ଓଃ ! ତୁ ସେ ବିଷୟ ଭାବେ ନା—ନେ ପିଠା ଖାଇ ଦେ ;" ଆଉ ଖଣ୍ଡିଏ ପିଠା ଗୁଞ୍ଜି ଦେଲେ ସେ ପିଲୁର ପାଟି ଭିତରେ ।

× × × ×

ସେ ଦିନ ସକାଳର ଶୀତୁଆ ପବନ ଆଉ ସୁନେଲି କିରଣ ବ୍ରହ୍ମପୁର ସହର ଭିତରେ ଭରି ଦେଇଥିଲା ପ୍ରଫୁଲ୍ଲତା । ରାସ୍ତାପାଖ କୋଠା ଗୁଡ଼ିକ କମଳା ରଙ୍ଗର । ପିଲୁର ମନେ ହେଲା ସହରଟିକୁ ଏତେ ସୁନ୍ଦର ରୂପରେ ସେ କେବେ ଦେଖି ନ ଥିଲା ଯେପରି ।

ଆଜି ସେ ସହର ଛାଡ଼ି ଚାଲିଯିବ । ନେଳି ରଙ୍ଗର ଟ୍ରେଙ୍କିଟିଆ ବାକ୍ସଟିରେ ସେ ରଖିଥିଲା ଖଣ୍ଡିଏ ଗ୍ଳେଟିଆ ଆରସି, ଖଣ୍ଡିଏ ଗ୍ଳେଟିଆ ପାନିଆ ଆଉ କେଇ ଖଣ୍ଡ ଜାମା, ପେଣ୍ଟ । ନିଲୁ ପାଖରେ ଠିଆ ହୋଇ ଦେଖୁଛି । ତା'ର ଇଚ୍ଛା ହେଉଛି ନିଲୁକୁ ସେ କାଖେଇ ପକାନ୍ତା !

ମା ବାସନ ମାଜୁଛନ୍ତି । ବାବୁ କଷ୍ଟରେ ପଣି କାଢ଼ୁଛନ୍ତି କୂଅରୁ । ନିଲୁକୁ ସେ ସକାଳୁ ବୁଲେଇ ନେଇନି । ତାକୁ କେହି ଆଜି କାମ କରିବାକୁ ଦେଇ ନାହାନ୍ତି । ସେ ଆଜି ଅନୁଭବ କରୁଛି ଘରେ ଗୋଟାଏ ଅଲଗା ଅଲଗା ଭାବ ।

ଗାଡ଼ିବେଳ ହୋଇ ଗଲାଣି । ଗରମ ଭାତ, ଚଣା ଡାଲି ଆଉ ବାଇଗଣ ପୋଡ଼ା ପିଲୁ ଖାଇ ବସିଲା । ସତେ ଯେମିତି ସେ ଆଜି ନୂଆ କରି ଏହା ଖାଉଛି ।

"ପିଲୁ, ତୁ ଘରକୁ ଯାଉଛୁ ? କେବେ ଆସିବୁ ?" ନିଲୁ ପିଲୁର ଜାମାକୁ ଜାବୁଡ଼ି ଧରି ପଚାରିଲା ! କୁଞ୍ଚୁକୁଞ୍ଚିଆ ଝାମ୍ପୁରୁ ବାଳ ଘେରି ରହିଛି ନିଲୁର ପଚାରିଲା ଆଖି ଉପରେ ! ଆଖିପତା ଓଦା ହୋଇ ଆସିଲା ପିଲୁର । ସେ କାଖେଇ ପକାଇଲା ନିଲୁକୁ । ଏତେ ଦିନ ଧରି ସେ ତାକୁ ଗଣ୍ଠି ଧନ କରିଥିଲା । ତାକୁ ଛାଡ଼ି ଚାଲିଯିବ କିପରି ?

ହାତକୁ ଖଣ୍ଡେ ଦଶ ଟଙ୍କିଆ ନୋଟ୍ ଓ ନୂଆ ଜାମା ଖଣ୍ଡିଏ ବଢ଼ାଇ ଦେଇ ଶଶୀ ଦେବୀ କହିଲେ— "ତୁ ସହରେ ଚାଲି ଯାଉଛୁ କରେ ପିଲୁ ? ହଉ ଯା; ତୋ ମା କୋଳକୁ ଫେରିଯା !! ମୁଁ ତତେ କେତେ ଗାଳି ଦେଉଥିଲି···କେତେ ମାରୁଥିଲି···ମତେ ଭୁଲି ଯିବୁରେ ପିଲୁ, ମତେ ଭୁଲିଯିବୁ ।"···କଣ୍ଠ ତାଙ୍କର ବନ୍ଦ ହୋଇ ଆସିଲା । ଆଖିରୁ ସେ ଲୁହ ପୋଛି ନେଲେ ।

ପିଲୁ ଭେଁ-ଭେଁ ହୋଇ କାନ୍ଦିବାକୁ ଲାଗିଲା । ସହରେ ମା' କ'ଣ ତାକୁ ଏତେ ସ୍ନେହ କରନ୍ତି ? ଟଙ୍କା କଥା ତ ଉଠାଉ ନାହାନ୍ତି ଓଲଟି ତାକୁ ଟଙ୍କା ଦେଉଛନ୍ତି ! ଏଇ ନାଲୁ । କାନ୍ଥ ପାଖରେ ଠିଆ ହୋଇଛି ବୁଲୁ ! ଏଇ ମା ? ଆଉ ବାବୁ ?? ··ନା ନା ତା'ର ଗାଁ'କୁ ଯିବା ଦରକାର ନାହିଁ—ସେ ଏମାନଙ୍କୁ ଛାଡ଼ି ଯାଇ ପାରିବ ନି···।

ପିଲୁ କାନ୍ଦୁଥିଲା; କିନ୍ତୁ ସେ ଲୁହରେ ଫୁଟି ଉଠୁ ନ ଥିଲା କୃତଜ୍ଞତାର ଝଲକ ! ସେଥିରେ ଥିଲା ବିଦାୟକାଳୀନ ସ୍ନେହ ଓ ମମତାର ଗୋଟାଏ ପ୍ରତିବିମ୍ବ !!

ସିଟି ମାରି ଦୋହଲା ଦୋହଲା ଟ୍ରେନ୍‌ଟା ଆଗେଇ ଚାଲିଥାଏ । ତା'ର ଧଡ଼କ୍ ଧଡ଼କ୍ ଶବ୍ଦ ଭିତରେ ପିଲୁର ଛାତି ଭିତରୁ ପ୍ରତିଧ୍ୱନିତ ହେଉଥାଏ ଗୋଟାଏ କରୁଣ ସ୍ୱର ।"···ମତେ ଭୁଲି ଯିବୁରେ ପିଲୁ, ମତେ ଭୁଲି ଯିବୁ !!" "···ପିଲୁ ତୁ ଘରକୁ ଯାଉଛୁ ? କେବେ ଆସିବୁ ?"

ଦୂର ଦିଗ୍‌ବଳୟ ତଳେ ଘାଉଁରି ଖାଉଥିବା ଘଣ ଜଙ୍ଗଲ ଆଡ଼କୁ ପାଣିପାଣିଆ ଆଖିରେ ଚାହିଁ ପିଲୁ ଲୁହ ପୋଛିଲା !!



# ଅନ୍ତରାଳେ

"ପ୍ରଦୀପ ଚିଠି ଦେଇଛନ୍ତି, ଏ ବର୍ଷ ସେ ଆସି ପାରୁ ନାହାନ୍ତି ।" ଚିଠିଟା ଅଧା ଖୋଲା ଅବସ୍ଥାରେ ଘର ଭିତରକୁ ପଶି ଆସିଲେ ବିନୋଦ ବାବୁ । ତାଙ୍କର ଭାବ-ଗମ୍ଭୀର ମୁଖ ମଣ୍ଡଳରେ ସ୍ପଷ୍ଟ ହେଉଥିଲା ଅସଂଖ୍ୟ ଚିନ୍ତାର ତରଙ୍ଗ !

"ଅବଶ୍ୟ ମୁଁ ଦୁଃଖିତ – ତାର ପ୍ରମୋଶନ ବିଷୟ ନେଇ ମତେ ଅନେକ ଚିନ୍ତା କରିବାକୁ ହେଉଛି ।" ଆରାମଚୌକି ଖଣ୍ଡିକ ଟାଣି ନେଇ ଚିଠି ଖଣ୍ଡିକ ଲେଉଟାଇ ଲାଗିଲେ ସେ ।

କାଚ ଗ୍ଲାସରେ ଥିବା ମିଶ୍ରି ପାଣି ଉପରେ ଲେମ୍ବୁ ଫାଳକ ଚିପୁଡ଼ି ବିନୋଦ ବାବୁଙ୍କ ପାଖରେ ଗ୍ଲାସଟାକୁ ଦୁଲ୍‌କିନା ଥୋଇ ଦେଲେ ନଳିନୀ ଦେବୀ ।

"ହାଁ ହାଁ, ଗ୍ଲାସଟା ଭାଙ୍ଗିଯିବ ଯେ"

"ହଉ ଭାଙ୍ଗୁ–ମୋର କଣ ଗଲା ?"

"ଓଃ ! ତମେ ଏମିତି ହେଉଛ କାହିଁକି ? ତାହା ହେଲେ ଲେଖି ଦେଉଛି ପ୍ରମୋଶନ ପାଇଁ ଅପେକ୍ଷା ନ କରି ବରଂ ଚାଲି ଆସିଲେ ଭଲ ହେବ ।"

"ନା, ନା, ଲେଖିବା ଦରକାର ନାହିଁ–ସେ ଆସି ମୋର କଣ କରିବ ? ଭାଗ୍ୟରେ ତ ଅଛି ସାରା ଜୀବନ ଏମିତି ଖଟିବା ।" ଆଉ କିଛି କହି ପାରିଲେ ନାହିଁ ନଳିନୀ ଦେବୀ । ଛାତି ଭିତରୁ ଉଠି ଆସୁଥିଲା ବେଦନାର ଉଚ୍ଛ୍ୱାସ ।

ତାଙ୍କ ମତରେ ଏସବୁ ପାଇଁ ଦାୟୀ କେବଳ ବିନୋଦ ବାବୁ । ବିବାହ ପରେ ପ୍ରଦୀପ ଆମେରିକା ନ ଯାଇଥିଲେ ହୁଏତ ଘର ପ୍ରତି ଗୋଟାଏ

ମମତା ରହିଥାନ୍ତା ତା'ର । ଏକମାତ୍ର ପୁଅ ପ୍ରଦୀପ । ସମସ୍ତ ଆଶା ଭରସା ସେ । ସ୍ୱପ୍ନ ଥିଲା···ପୁଅ ବିଦେଶରୁ ଆସିବ, ବଡ଼ ଲୋକ ଦେବ-ବୋହୂ ଆସିବ···ଆଉ ତାର କୋଳରେ ହସି ଉଠିବ ସବୁଗର ଗୃହ ।···

ନଳିନୀ ଦେବୀ ମୁଁ ମୁଁ ହୋଇ କାନ୍ଦି ଲାଗିଲେ-ପ୍ରଦୀପ ଏ ବର୍ଷ ମଧ୍ୟ ଆସିଲା ନାହିଁ ।—ଆଉ କେତେ ଦିନ ବଞ୍ଚିବେ ?

ମାଳବିକା କେତେ ଅପେକ୍ଷା କଲା ତାକୁ ? ପ୍ରଦୀପ ତାକୁ କଥା ଦେଇଥିଲା । ମାଳବିକାଟି କେତେ ସୁନ୍ଦର ମନରେ ? ବଡ଼ବୁଝା ! ସେ ଏ ଘରକୁ ବୋହୂ ହୋଇ ଆସିଥିଲେ ତାଙ୍କର ହାତ ନାତୁଣୀ ହୋଇ ସାରନ୍ତାଣି ! ମାଳବିକା ଶେଷରେ ରବିକୁ ବାହା ହେଲା ।

ସମସ୍ତ ବିବାହ ହୋଇ ଗୃହିଣୀଗଲେ ! ତାଙ୍କ ଘରେ ଆଉ ବାଜା ବାଜିଲାନି କି ହୁଳହୁଳି ଶୁଭିଲା ନି । ନାଲି ଶାଢ଼ୀ, ନାଲି ଶଙ୍ଖା ପିନ୍ଧି ପାଦରେ ଝୁମୁକା ପାଉଁଜି ଲଗାଇ କିଏ ଆଉ ସଞ୍ଜବତୀଟିଏ ଜାଳିଲା ନାହିଁ । ଘରଟା କେତେ ଖାଁ ଖାଁ ଦିଶୁଛି ସତେ ?

ଉପର ଘର ବାରଣ୍ଡାକୁ ଭଲକରି ଧୋଇ ଲାଗିଲେ ନଳିନୀ ଦେବୀ । ବହୁ ଦିନରୁ ସାଇତା ପୁରୁଣା ଯୋତା ହଳକ ଆଲଣା ତଳେ ଥୁଆ ହୋଇଛି ସେମିତି । ପ୍ରଦୀପ ଆମେରିକା ଯିବା ଦିନ ଜୋତା ହଳକ ଛାଡ଼ି ଯାଇଥିଲା । ଯୋତା ହଳକ ଦେଖିଲେ ନଳିନୀ ଦେବୀଙ୍କ ଆଖିରୁ ଝରିଆସେ ଲୁହ ! କାନ୍ଥରେ ଟଙ୍ଗା ହୋଇଥିବା ପ୍ରଦୀପର ଫଟୋ ତଳେ ଥୋଇ ଦିଅନ୍ତି ସେ । ତାଙ୍କୁ ଯେପରି ଜଣାପଡ଼େ ପ୍ରଦୀପ ଖାଲି ପାଦରେ ଆସୁଛି । ଯୋତା ହଳକ ପିନ୍ଧି ପକାଉଛି । ଜହ୍ନିଆ ରାତି ବେଳେ ଘୁମ ନିଦ ଲାଗିଥିଲେ ସେ ଧଡ଼ପଡ଼ ହୋଇ ଉଠି ପଡ଼ନ୍ତି । କିଏ ତାଙ୍କ ଡାକି ଡାକି ଫେରିଗଲା କି ?······କିଛି କ୍ଷଣ ପରେ ଏକ ହତାଶାର ଦୀର୍ଘଶ୍ୱାସ ବାହାରି ଆସେ ତାଙ୍କ ଛାତି ଭିତରୁ ! ପ୍ରତୀକ୍ଷା ବାସ୍ତବିକ୍ କେତେ ଯନ୍ତ୍ରଣାଦାୟକ ?

× × ×

ରବି ମାଳବିକାଙ୍କୁ ନେଇ ତାଙ୍କ ଘର ପାଖରେ ଭଡ଼ାରେ ଅଛି । ମାଳବିକାର ପୁଅ ହୋଇଛି । କେତେ ବଡ଼ ହୋଇଗଲାଣି ସେ ! ଘର ଗୁଲୁଗୁଳା ଆଣିଏ ହୋଇଛି । ରବିର ବୋଉ ସବୁବେଳେ ନାତି ବିଲୁକୁ ନେଇ ବୁଲୁଛି । ନାତି-ଗର୍ବରେ ଯେମିତି ଫାଟି ପଡ଼ୁଛି । ରବିଟା ପ୍ରଦୀପର କଲେଜ ସାଥୀ !

ମାଳବିକାର ପୁଅ ଆସିଛି । ବିନୋଦ ବାବୁଙ୍କ କୋଳରେ ବସିଛି । ସାର୍ଟରୁ କଲମ ଛଡ଼ାଇ ନେଉଛି । ବିନୋଦବାବୁ ହସି ହସି ଗଡ଼ି ଯାଉଛନ୍ତି । ବିଲୁର ହାତ ଦିଓଟି ଧରି ଉପରକୁ ଟେକି ଗେଲ କରୁଛନ୍ତି । ବୋକ ଦେଇ ଲାଗିଛନ୍ତି ! ରବିର ବୋଉ ଦୁଆର ବନ୍ଧଟାରେ ଠିଆ ହୋଇ ହସୁଛି । କେତେ ଖୁସିରେ ଅଛି ସେ !

ପ୍ରଦୀପ ବିବାହ ହୋଇଥିଲେ ତା'ର ବି ଏମିତି ପୁଅ ହୋଇ-ଥାନ୍ତା ! ବିନୋଦବାବୁ କେତେ ଗେଲ କରୁ ନ ଥାନ୍ତେ ? ମାଗୋ ଆଣିଲା ଛଅଣ କେତେକେ ? ଯେତେ ହେଲେ ବିଲୁ ରବିର ପୁଅ ।

ରବିର ବୋଉ ନାତିକୁ କୋଳରେ ଧରି ବସିଛି । ବିଲୁ ଝନେଇ ଝନେଇ କେତେ କଥା କହୁଛି । ବିନୋଦବାବୁ ବସିଛନ୍ତି ।

"ବିଲୁ କହିଲୁ କହିଲୁ—ନାକକୁ କ'ଣ କହନ୍ତି ?"

"ନୋଜ୍ ।"

"କାନକୁ ?"

"ଇଏଲ୍ ।"

"କହିଲୁ କହିଲୁ କୁକୁର କେମିତି ଡାକେ ?"

"ବୋ, ବୋ !"

"କୁକୁଡ଼ା ?"

—ଝୁଙ୍କି ପଡ଼ି ଝରକା ଫାଙ୍କରେ ମୁହଁ ଗଳେଇ ଆରପଟକୁ ଚାହିଁରହିଲେ ନଳିମା ଦେବୀ । ହାତରେ ଜଳଖିଆ ଥାଳିଆଟା ଧରିଛନ୍ତି

ସେ—ବିନୋଦ ବାବୁଙ୍କୁ ଡ଼ାକି ପାରୁ ନାହାନ୍ତି । ଇସ୍, କେତେ ଜୋର୍‌ରେ ହସୁଛନ୍ତି ବିନୋଦବାବୁ !

ତାଙ୍କର ଏମିତି ନାତିଟିଏ ଥିଲେ ଘର ଆଲୁଅ ହୋଇ ଯାଉଥାନ୍ତା ! କୋଳ ଉପରେ ବସି କେଡ଼େ ସୁନ୍ଦର ଝୁଲୁଥାନ୍ତା···ସେ ?

"କ'ଣ ସେଇଠି ଠିଆ ହୋଇ ଦେଖୁଛ ? ଜଳଖିଆ ଦେବ ପରା ?"

ହାତରୁ ଜଳଖିଆ ଥାଳିଆଟା ଖସିପଡ଼ିଲା ବାରଣ୍ଡା ଉପରେ । ଅପ୍ରସ୍ତୁତ ହୋଇ ଗୋଟାଇବାରେ ଲାଗିଲେ କମଳା ଦେବୀ ।

"ଆରେ··ଆରେ ତମେ ଗୋଟାଉଛ ? ଫିଙ୍ଗି ଦିଅ ଫିଙ୍ଗି ଦିଅ—ସେଗୁଡ଼ାକ କିଏ ଖାଇବ ?"

"ମୁଁ ଖାଇବି— ମୁଁ ମଲେ କାହାର କ'ଣ ଯିବ କି ? ଘରେ ତ ଜଳଖିଆ ପାଇଁ ପୁଅ ଅର୍ଜନ ଗୁଡ଼ାକ ରଖି ଦେଇଛି !"

ବିନୋଦବାବୁ ନିରୁତ୍ତର ହେଲେ । ପାଣି ଗ୍ଲାସକ ପିଇଦେଇ କୋଡ଼ି ଖଣ୍ଡିଏ ହାତରେ ଧରି ଚାଲିଗଲେ ବଗିଚାକୁ । ପେନସନ୍ ଟଙ୍କାଟା ତଥାପି ମିଳି ନାହିଁ । ପ୍ରଦୀପର ପଢ଼ା ପାଇଁ ସେ ବହୁତ ଧାର କରି ପକାଇଛନ୍ତି । ସେ ସବୁ ଏ ପର୍ଯ୍ୟନ୍ତ ଶୁଝା ହୋଇ ପାରିଲା ନାହିଁ । ଘର ଭଡ଼ା ମଧ୍ୟ ବାକି ରହିଛି—ଘର ଏଯାଏଁ କରି ପାରି ନାହାନ୍ତି । ଶିକ୍ଷକ ଜୀବନ ଭିତରେ ସେ ଯେ ଗୋଟାଏ ପୁଅକୁ ଡ଼ାକ୍ତର କରି ପାରିଛନ୍ତି, ଏକଥା ତାଙ୍କ ପକ୍ଷରେ କ'ଣ ଯଥେଷ୍ଟ ନ ଥିଲା ? କିନ୍ତୁ ପ୍ରଦୀପ କ'ଣ କଲା ? ଏ ଗରିବ ବାପମା'ଙ୍କ କଥା ଦିନକ ପାଇଁ ହେଲେ ଭାବିଲା ନାହିଁ !

ଜଣେ ପୁରୁଣା ଶିକ୍ଷକ-ବନ୍ଧୁ କହିଥିଲେ, "ବୁଝିଲେ ଆଜ୍ଞା, ଏତେ ଟଙ୍କା ଖର୍ଚ୍ଚ କରି ବିଲାତରେ ଆପଣ ପଠାଇଲେ ସିନା – ସେ କ'ଣ ଆଉ ଫେରିବ ? ଏମିତି କେତେକ ରହିଯାଉଛନ୍ତି ନା । ଅଭୟ ବାବୁଙ୍କ ପୁଅ କ'ଣ ଫେରିଲା ? ବୁଢ଼ା ବାପାଟା ଶେଷରେ ଝୁରି ଝୁରି ମରିଗଲା ।"

ନା, ନା ପ୍ରଦୀପ ତାଙ୍କର କଦାପି ସେପରି ହୋଇ ନ ପାରେ । କାର୍ଡ଼ିଓଲୋଜି ବିଷୟରେ ଯୋଗ୍ୟତା ହାସଲ କରି ସେ ହେବ ଓଡ଼ିଶାର ଏକ ବିଶିଷ୍ଟ ଡାକ୍ତର । ଗରିବଙ୍କ ଦୁଃଖ ବୁଝି ସେ ହେବ ସମାଜର ଏକ

ବଶିଷ୍ଟ ବ୍ୟକ୍ତ । ତାଙ୍କ ପକ୍ଷରେ ଖଣ୍ଡିଏ ଘର ଆଉ ଗୋଟାଏ ମଟର ଗାଡ଼ିର ତ ଅଭାବ ରହିବ ନାହିଁ । ଆଃ, କେତେ ଯେ ସ୍ୱପ୍ନଥିଲା ତାଙ୍କର ?

—ନଳିନୀ ଦେବୀଙ୍କ ମନରେ ସାନ୍ତ୍ୱନା ଦେବା ପାଇଁ ସେ ସବୁବେଳେ କହୁଥାନ୍ତି—"ପ୍ରଦୀପର ପ୍ରମୋଶନ୍ ହେବାର ଅଛି, ଏବର୍ଷ ଡିସେମ୍ବରରେ ପରୀକ୍ଷା ସରିଲେ ସେ ନିଶ୍ଚୟ ଆସିବ । ଏପ୍ରିଲରେ ଆସୁଛି··· ମୋତେ ଆସିବା ପାଇଁ ଲେଖିଛି । କିନ୍ତୁ ଏହିପରି ବର୍ଷ ବର୍ଷ ବିତିଗଲାଣି । ତଥାପି ପ୍ରଦୀପ ଫେରିଲା ନାହିଁ କିମ୍ବା ଫେରିବା କଥା ଦିନକ ପାଇଁ ହେଲେ ଲେଖିଲା ନାହିଁ । ଏଣିକି କ'ଣ କହି ସେ ସାନ୍ତ୍ୱନା ଦେବେ ନଳିନୀ ଦେବୀଙ୍କୁ ? ମାତୃ ହୃଦୟର ଯେ କି ବ୍ୟଥା ! ସମସ୍ତ ସ୍ନେହ ସୋହାଗ ଭୁଲି ରହିପାରୁଛି କେମିତି ? ଏ ବୁଢ଼ା ବାପଟା କଥା ଦିନକପାଇଁ ହେଲେ ଭାବିଲା ନାହିଁ ? ଗୋଲାପ ଗଛତଳେ ମାଟି କୋଡ଼ିବା ଆରମ୍ଭ କଲେ ବିନୋଦବାବୁ ।

ଗଛଟି କେତେ ବଡ଼ ହୋଇ ଗଲାଣି । ତାର କଲମୀରେ କେତେ ନୂଆ ଗଛ ଲାଗି ଛି ? ପ୍ରଦୀପ ଆମେରିକା ଯିବା ପୂର୍ବରୁ ଏ ଗଛର କଲମୀ ଆଣିଥିଲା କଲିକତାରୁ ।

ନୂଆ ଗଛରେ ଫୁଲ ଫୁଟିଛି । କେତେ କଢ଼ି ଲଦି ହୋଇଛି ସତରେ ? ହସି ଉଠିଲେ ବିନୋଦବାବୁ !

"କ'ଣ ଶୁଣୁଛ ? ନୂଆ ଫୁଲଟି କେଡ଼େ ସୁନ୍ଦର ଦିଶୁଛି ଦେଖିଲ ? ଆସ ଦେଖାଇ ଦେବି ?"

"ଯାଉନ-ବୁଢ଼ା ଦିନେ କେତେ ପ୍ରେମ ? ଏ ଘରକୁ ଯିଏ ବୋହୂ ହୋଇ ଆସିବ ତା ପାଇଁ ଏ ଫୁଲ ଥାଉ ।"

"ଆଉ ତାଙ୍କର ଯେଉଁ ଗୁଣମଣିର ଆବିର୍ଭାବ ହେବ ସେତେବେଳେ କ'ଣ ଏ ଗଛରେ ଫୁଲ ରହିବ ଭାବୁଛ ?"

"ନ ରହିଲେ କ'ଣ ହେଲା ! ତା'ଠାରୁ କ'ଣ ତମର ଏ ଗୋଲାପ ଫୁଲଟା ବେଶୀ ସୁନ୍ଦର ?"

"ଅଜା ଏଠି କଣ କଲୁଚ ? ପକାଣ୍ଡ ଗ୍ରାଇକେଲରେ ଖେଳୁଛ ତମେ ମୋ ପାଇଁ ଗୋଟେ ଗ୍ରାଇକଲ ଆଣି ଦେବନି ?" ପିଠି ଉପରେ ଝୁଙ୍କି ପଡ଼ି ମୁହଁ ପାଖରେ ମୁହଁ ରଖି ପଚାରିଲା ବାଲୁ । ଶିହରି ଉଠିଲେ ବିନୋଦ ବାବୁ । କେଡ଼େ ସରଳ ଓ ନିର୍ଦ୍ଦୋଷ ଏ ଆଖି ଦୁଇଟି ? ପ୍ରଦୀପର ପୁଅଟି ଠିକ୍ ଏମିତି ହୋଇଥାନ୍ତା । ତାଙ୍କ ସାଙ୍ଗରେ ମିଶି ଗୋଲାପ ଗଛରେ ମାଟି ପକାଉଥାନ୍ତା । ହଁ ବାଲୁ ଉଦବର ପୁଅ ! ହଁ ହଁ ତାଙ୍କର ମଧ୍ୟ ନାତି ।

× × ×

ଘଣ୍ଟା ବାଜି ଉଠିଲା ମନ୍ଦିରରେ । ସଞ୍ଜ ବଳଦାଟିଏ ହାତରେ ଧରି ଦାଣ୍ଡ ଇରୁଣ୍ଡି ରେ ଥୋଇ ମଥା ନୁଆଁଇ ଆଣିଲେ ନଳିମୀ ଦେବୀ । ହୃଦୟ ତଳରେ କେତେ ଅକୁହା ବେଦନା ସଞ୍ଜ ଦୀପର ଶିଖା ସହିତ ମିଳାଇ ଯାଉଥିଲା । ଉକ୍ ସାର ଘଣ୍ଟି ଶବ୍ଦରେ ସେ ପ୍ରକୃତିସ୍ଥ ହୋଇ ଚାହିଁଲେ । ବିନୋଦ ବାବୁ ହସି ହସି ପଶି ଆସୁଥିଲେ ଘର ଭିତରକୁ । ହାତରେ ଗୋଟାଏ ନାଲି ରଙ୍ଗର ତିନି ଚକିଆ ସାଇକଲ୍ ।

ହଠାତ୍ ମୁହଁଟା ଫିକା ପଡ଼ିଗଲା ନଳିନୀ ଦେବୀଙ୍କର । ଢମ ଢମ ହୋଇ ସେ ଚାଲିଗଲେ ଭିତର ଘରକୁ ।

"ଶୁଣିଲଣି ? ଦେଖିଲ ସାଇକଲ୍ ଟା କେମିତି ହୋଇଛି ।"

ବିନୋଦ ବାବୁ ଉଲ୍ଲାସ ସହକାରେ କହୁଥାନ୍ତି, "ବାଲୁ ପାଇଁ ଆଣିଛି — ପିଲାଟା ସବୁବେଳେ ମୋ ସାଙ୍ଗରେ ଲଗାଏ । ଆଜି ପେନ୍ ସନ୍ ଟଙ୍କାଟା ମିଳିଲା ଯେ···ହଇହୋ ଶୁଣୁଛ···ଭଲ ହେଇନି ।"

"ଯାଉନ ବାଲୁର ବୁଢୀମା'କୁ ପଚାରିବ ?" ଶେଷ ହେଲକୁ ନଳିମୀ ଦେବୀଙ୍କ ସ୍ୱର ଥରି ଉଠୁଥିଲା । ପାଦ ଦୁଇଟି ଥରିଗଲା ବିନୋଦ ବାବୁଙ୍କର ! ତାଙ୍କର ଯେପରି ମନେ ହେଲା ଏ ସ୍ୱର କେବଳ ଆକ୍ଷେପଭରା କିମ୍ବା ଅଭିମାନଭରା ନୁହେଁ — ଏହା ଚରମ ପରାଜୟର ମର୍ମଭେଦୀ ଆତ୍ମପ୍ରକାଶ !

ପ୍ରଦୀପର ଅନୁପସ୍ଥିତି ଏ ଅଶାନ୍ତିର ମୂଳ କାରଣ । ଆଉ ସେଥିପାଇଁ ଦାୟୀ ସେ ନିଜେ !

ଏହିପରି ଏକ ଧୂସର ସନ୍ଧ୍ୟାରେ ସେ ଆଣିଥିଲେ କଲିକତାରୁ ପିଲାଙ୍କ ପାଇଁ ଗୋଟାଏ ଠେଲାଗାଡ଼ି । ନଳିନୀ ଦେବୀ ସେ ଦିନ ଜନନୀ ହେବାର ଗୌରବରେ ଫୁଲି ଉଠୁଥିଲେ । ଆଉ ସବୁ ପ୍ରଥମେ ଦସ ପ୍ରଦୀପକୁ ନେଇ ବସାଇଥିଲେ ସେହି ଗାଡ଼ିରେ । ଇସ୍ କି ଉଜ୍ଜ୍ୱଳ ଦିଶୁଥିଲା ତାଙ୍କର ଆଖି ଦିଓଟି ! ପ୍ରତ୍ୟାଶା କେତେ ଶ୍ରେଷ୍ଠ ଥିଲା ସେତେବେଳେ ?

"ଦେଖିଲ, ଦେଖିଲ — ମୋ ପୁଅ କେମିତି ଗାଡ଼ି ଚଳାଉଛି ? ବଡ଼ ହେଲେ କାର୍ ଚଳାଇବ — ବିଲାତ ଯିବ ?...ପାଠପଢ଼ି ବଡ଼ଲୋକ ହେବ ।"

ଓଃ ! ସେ କଷ୍ଟ !" କଣ୍ଠ ଲେଉଟାଇଲେ ନଳିନୀ ଦେବୀ – ମୁଣ୍ଡର ଅଲିଗା ବାଳଗୁଡ଼ିକ ପଡ଼ିଛି ଗାଲ ଉପରେ...ଓଠ ଦିଶୁଚି ପାଂଶୁଳ ! ଦେହରେ ଭୀଷଣ ତାତି...ଆଖି କୋଣରୁ ଝରି ଯାଇଥିବା ଲୁହ ଧାର ଦିଓଟି କେତେବେଳରୁ ଶୁଖିଯାଇଛି । ଛଳନାପୂର୍ଣ୍ଣ ସଂସାର ମଧ୍ୟରେ କି ଆକୁଳ ପ୍ରତୀକ୍ଷା ତାଙ୍କର ?

"ଚିଠି ! ପ୍ରଦୀପ ଦେଇଛି !..."

କଣ କହି–ଏଥର ସେ ସାନ୍ତ୍ୱନା ଦେବେ ନଳିନୀ ଦେବୀଙ୍କୁ ? ଦୀର୍ଘ ୧୫ ଦିନର ଜ୍ୱର ପରେ ଏ କଥା ଶୁଣିଲେ ହୁଏତ ତାଙ୍କର ହୃଦ୍‌ସ୍ପନ୍ଦନ ବନ୍ଦ ହୋଇଯିବ ! ସତରେ ସେ କଣ ଏଥର ବଞ୍ଚିବେ ? ଯେଉଁ ମା ଦୀର୍ଘ ଦଶ ବର୍ଷ ଧରି ଅପେକ୍ଷା କରି ଆସିଛି ପୁଅ ବିଦେଶରୁ ଆସିବ ! ବିବାହ କରିବ...ତାଙ୍କର ଘର ଉଜ୍ଜ୍ୱଳ କରି ହସି ଉଠିବ ସୁନାର ଚାନ୍ଦ ! ଆଃ !... ଏଣିକି ଆଉ କାହାକୁ ନେଇ ଜୀବନ ? ଏ ସଂସାର ?

"ଏଁ କଣ କହୁଛ ?"

"ହୁଁ—"

"ପ୍ରଦୀପ ଚିଠି ଦେଇଛି ? କଣ ଲେଖିଛି ?"

"ହଁ ତମେ ଔଷଧ ଖାଇଲଣି ? ନିଅ ଖାଇଦିଅ ।"

"ନା, ନା, ମୋର ଔଷଧ ଦରକାର ନାହିଁ । କଣ ଲେଖିଛି କୁନା । କେବେ ଆସିବ ? କେତେବେଳେ ମୁଁ ତାକୁ ଦେଖିବି ?"

"ତମେ ବ୍ୟସ୍ତ ହେଉଛ କାହିଁକି ? ଔଷଧ ଖାଇଦିଅ ।"

"ନାହିଁ, ନାହିଁ ମୋର ଔଷଧ ଦରକାର ନାହିଁ" କହିଁ, କହିଁ ହୋଇ କାନ୍ଦି ଉଠିଲେ ନଳିନୀ ଦେବୀ । "କୁନ୍ତ କଣ ଲେଖିଛି ସେ" ?

"ଲେଖିଛି—ଗଲା ମାସରେ ତାର ଗୋଟିଏ ପୁଅ ହୋଇଛି" !

"ଏଁ ପୁଅ ହୋଇଛି ? ମୋର ପ୍ରଥମରେ ପୁଅ ହୋଇଛି .? ଓଃ ଭଗବାନ୍, ମୁଁ କଣ ଶୁଣୁଛି ? ମୋର ନାତି ହୋଇଛି ? ତମେ ଏତେ ସମୟ ଧରି କହୁ ନ ଥିଲ କାହିଁକି ?" ନଳିନୀ ଦେବୀଙ୍କର ଆଖି ଦୁଇଟି ଅପେକ୍ଷାକୃତ ଉଜ୍ଜ୍ୱଳ ଉଠିଲା । ଧୀରେ ଧୀରେ ସେ ଉଠିବାକୁ ଚେଷ୍ଟା କଲେ ।

"କାହାକୁ ସେ ବାହା ହେଲା ?" ବଡ଼ ଉତ୍‌କଣ୍ଠିତ ଭାବରେ ପଚାରିଲେ ନଳିନୀ ଦେବୀ ।

ଯଦି ସେ ଜାଣନ୍ତେ—ଠକ୍‌ଠାକ ଜୋତାପିନ୍ଧା ସାହେବାଣୀକୁ ତାଙ୍କର ପୁଅ ବାହା ହୋଇଛି ?···ପାରନ୍ତେ ରହିଲେ ବିନୋଦ ବାବୁ ?

"ଆହା···ସେଥିରୁ ଗୋଟେ ଇଂରେଜୀ ଝିଅ ତ ହୋଇଥିବ ! କ'ଣ ଗଲା ସେଇଠୁ ? ସେ ବି ତ ମଣିଷ ? ମହାଭାରତରେ ଶାନ୍ତନୁ କୁମାର ପୁଣି କେଉଁଟ ଝିଅକୁ ବାହା ହୋଇଥିଲେ । ଯାହା ହେଲେ ମଧ୍ୟ ସେ ମୋ ଘରର ବୋହୂ ! କୁଳଲକ୍ଷ୍ମୀ—ପ୍ରମାଣର ଆମର ଦରକାର ନାହିଁ !"

ବିନୋଦ ବାବୁ ଆଶ୍ଚର୍ଯ୍ୟ ଭାବରେ ଚାହିଁ ରହିଥାନ୍ତି । ନଳିନୀ ଦେବୀ କହି ଚାଲିଥାନ୍ତି···"ଏଥର ତମେ ମୋ ନାତି ପାଇଁ ଗୋଟିଏ ତିନି ଚକିଆ ସାଇକଲ ଆଣିଦେବ ବୁଝିଲ ?" ନଳିନୀ ଦେବୀଙ୍କ ରୋଗିଣା ହୃଦୟ ଭିତରେ ଖେଳି ବୁଲୁଥିଲା ଆନନ୍ଦର ଅଜସ୍ର ଢେଉ । ଶେଷ କଥା ପଦକରେ ଭରି ରହିଥିଲା ଏକ ଅନୁନୟର ସୁର୍ ! ବହୁବର୍ଷ ଧରି ସେଭଳି ଏକ ସୁର୍ ଶୁଣିବାକୁ ମିଳି ନ ଥିଲା !

କେତେ ସହଜରେ ବୁଝିଗଲେ ନଳିନୀ ଦେବୀ ? ବିନୋଦ ବାବୁଙ୍କ ଧର୍ମଗତ ବିଦ୍ରୋହ ପ୍ରାଣରେ ଆଘାତ ଲଗିଥିଲା—କିନ୍ତୁ ନଳିନୀ ଦେବୀଙ୍କ ପ୍ରତୀକ୍ଷାକ୍ଳାନ୍ତ ହୃଦୟ ଭିତରେ ଘୃଣା ନାହିଁ, ଅଭିମାନ ନାହିଁ । ଏକ ନୂତନ ଗୌରବ ତାଙ୍କ ହୃଦୟକୁ କେତେ ନରମ, କେତେ କ୍ଷମାଶୀଳ କରି ଗଢ଼ି ପାରିଲା ସତରେ ?

ଶଙ୍ଖ ବାଜିବ—ରୂପର ଆଲୋକରେ ଘର ଅଗଣା ଝଟକି ଉଠିବ । ଯାହାହେଲେ ସେ ବୋହୂ· · ତାର କଅଁଳା ପୁଅଟି ପ୍ରଦୀପର ପୁଅ । ନଳିନୀ ଦେବୀଙ୍କ ନାତି· · ·ତା'ରି ମୁହଁରେ ଫୁଟି ଉଠିବ ମିଠା ମିଠା ହସ—ଆଉ ସଞ୍ଜ ଆକାଶର ସୁନେଲି ତାରାଟି ପରି ତା'ରି ଓଠରେ ଫୁଟି ଉଠିବ ତତଲୋଟି କଥା—ସେ ଖେଳି ବୁଲିବ ତିନି ଚକିଆ ସାଇକଲରେ-ଗୋଲାପ ପାଖୁଡ଼ା ଛୁଣ୍ଡାଇ ସେ ବିଞ୍ଛିଦେବ ଘରଯାକ ? ଆଃ ! ତାହାହିଁ ତାଙ୍କର ସ୍ୱର୍ଗ !

କିନ୍ତୁ ବିନୋଦ ବାବୁଙ୍କ ଆଖିରୁ ନଳିନୀଙ୍କ ଅଲକ୍ଷ୍ୟରେ ବୋହି ଚାଲିଥିଲା ଅସରନ୍ତି ଅଶ୍ରୁଧାର· · ·ସେ କହିପାରୁ ନ ଥିଲେ· · ·ପ୍ରଦୀପ ଛାଡ଼ି ଦେଇଛି—ସେ ନିକଟରେ ଘରକୁ ଫେରୁ ନାହିଁ ! ! ସେ ଫେରୁ ନାହିଁ ! !



# ଅସମାପିକା

ଦିବାକର ବାବୁଙ୍କର ଉପସ୍ଥିତି ସମୟର ମୂଲ୍ୟ ଅନୁଭବ କରୁଥିବା ବ୍ୟକ୍ତିଙ୍କ ପକ୍ଷେ ବିରକ୍ତିକର ଥିଲେ ମଧ୍ୟ ଅଧିକାଂଶ ତାଙ୍କୁ ସ୍ୱାଗତ କରୁଥିଲେ । କାରଣ ତାଙ୍କର କହିବାର ଶୈଳୀ ଥିଲା ସ୍ୱତନ୍ତ୍ର । ହଠାତ୍ ରାଗିଯିବା କିମ୍ବା ହଠାତ୍ ହସି ହସି ଗଡ଼ିଯିବା କିମ୍ବା କଥାର ଆରମ୍ଭ ଓ ଶେଷରେ ଏକ ନାଟକୀୟ ପରିବେଶ ସୃଷ୍ଟି କରିବା ଥିଲା ତାଙ୍କର ଆଳାପର ବିଶେଷତ୍ୱ ।

ଏକ ସାଧାରଣ ମଇଳା ଧୋତି ଉପରେ ଖଣ୍ଡେ କଳା କୋଟ ଲଦି ସେ ନିଜକୁ ଆବୃତ କରି ରଖୁଥିଲେ । ଗଳ୍ପ ଆରମ୍ଭ ସମୟରେ ତାଙ୍କର କୋଟ୍‌ର ବୋତାମ ଗୁଡ଼ିକ ଉପରି ମେଲା ହୋଇ ଯାଉଥିଲା ଏବଂ ଉପରି ସେ ଗୁଡ଼ିକର ବାରମ୍ବାର ସ୍ଥାନ ପରିବର୍ତ୍ତନ ହୋଇ ଯାଉଥିଲା. ସେ ଯିବା ପରେ ଉପସ୍ଥିତ ବନ୍ଧୁମଣ୍ଡଳୀ ଏହି ବିଷୟ ନେଇ ବହୁ ସମୟ ହାସ୍ୟ ଆମୋଦସହ ଆଲୋଚନା କରୁଥିଲେ ।

ସିଗାରେଟ ତ ସେ ବ୍ୟବହାର କରୁ ନ ଥିଲେ । କିନ୍ତୁ ଏହି ବିଷୟ ନେଇ କେହି ଯଦି ତାଙ୍କୁ ସମାଲୋଚନା କରୁଥିଲା, ସେ ହଠାତ୍ ବିରକ୍ତ ହୋଇ ଉଠୁଥିଲେ ଏବଂ ଅଧାଜଳା ସିଗାରେଟ ଖଣ୍ଡିଏ କୌଣସି ବନ୍ଧୁଙ୍କ ଓଠରୁ ଟାଣି ନେଇ ଇଂରାଜୀ, ଓଡ଼ିଆ, ହିନ୍ଦୀ ଓ ବଙ୍ଗଳା ଭାଷାର ଖେଚୁଡ଼ି କରି ଗାଳିଦେବା ସଙ୍ଗେ ସଙ୍ଗେ; ବାରମ୍ବାର ଟାଣି ସିଗାରେଟଟିକୁ ଶୀଘ୍ର ନିଃଶେଷ କରି ଦେଉଥିଲେ । ତାଙ୍କର ଏ ଅଭିନୟ ଥିଲା ନାଟକୀୟ ଏବଂ କୌତୂହଳ ଉଦ୍ଦୀପକ ।

ଥରେ ସେ ଚଶମା ହ'ଟା ଏକ ପ୍ଲାଷ୍ଟିକ୍ ତାରରେ ଗୁନ୍ଥି ଆଖିରେ ଲଗାଇ ଥିବାରୁ ବନ୍ଧୁ ମହଲରେ ହସର ପ୍ରବାହ ସୃଷ୍ଟି ହେଲା । ସେ କିନ୍ତୁ

ହଠାତ୍ ଗମ୍ଭୀର ହୋଇ ଉଠିଲେ । ତାଙ୍କର ଚଶମା ଭିତରେ ଯେ କିଛି ରହସ୍ୟ ଲୁଚି ରହିଛି ଏକଥା ସେ ପ୍ରକାଶ କରିବାକୁ ଚାହିଁଲେ ନାହିଁ । ଦିନ ଗୁରି ଦିନ ପରେ ସେ ଆସି କହିଲେ ଯେ, ଏଣିକି ଏପରି ଚଶମା ତିଆରି କରି ବିକିବେ । ଏଥିରେ କେବଳ କାଚର ମୂଲ୍ୟ ଛଡ଼ା ଅଧିକା କିଛି ଖର୍ଚ୍ଚ ହେବ ନାହିଁ । ମାତ୍ର ଦେଢ଼ ଟଙ୍କାରେ ଶସ୍ତା ଓ ସୁବିଧା ଦରରେ ଲୋକେ ଚଶମା ତିଆରି କରି ପିନ୍ଧି ପାରିବେ । ତାଙ୍କର ଏ ନୂତନ ଚିନ୍ତାଧାରା ଯେ ହାସ୍ୟାସ୍ପଦ ହୋଇପାରେ ସେ କଥା ସେ ଭାବି ପାରି ନ ଥିଲେ । ତେବେ କିଛିଦିନ ପରେ ଏ ବ୍ୟବସାୟରେ ସେ କ୍ଷତିଗ୍ରସ୍ତ ହୋଇଥିଲେ ବୋଲି ଦୁଃଖ ପ୍ରକାଶ କରିଥିଲେ ।

ଭୋଜନ ବିଷୟରେ ସେ ଅତି ଶୃଙ୍ଖଳାବାଦୀ । ଆକସ୍ମିକ ଭାବରେ ସେ କୌଣସି ବନ୍ଧୁଙ୍କ ଘରେ ଖାଇବା ବିରୋଧ କରି ଦିଅନ୍ତି । ରନ୍ଧା ସରିବା ପରେ ପୁନର୍ବାର ରାନ୍ଧିବାଟା ଯଦି ଗୃହିଣୀମାନଙ୍କୁ ବିଶେଷ କିଛି ବାଧେ ନାହିଁ—ତଥାପି ପହିଲି ପ୍ରବନ୍ଧନମାନଙ୍କରେ ଘରେ ଜିନିଷପତ୍ର ନ ଥିବା ବେଳେ ଧାରଉଧାର ମଗାଯାଇ କରି ଅତିଥି ଚର୍ଚ୍ଚାର ସମସ୍ତ ଆୟୋଜନ କରିବା ସତ୍ତ୍ୱେ ଦିବାକର ବାବୁ ଯେତେବେଳେ ଖାଇବାକୁ ଆସିବା ପାଇଁ ହଠାତ୍ ଭୁଲିଯାଆନ୍ତି, ସେତେବେଳେ ମନରେ ଜାତ ହୁଏ ଖାଦ୍ୟ ଅସ୍ୱସ୍ତି । ଅଥଚ ତାହାହିଁ ତାଙ୍କ ଚରିତ୍ରର ଏକ ବିଶେଷ ଦିଗ ।

ଅନେକ ସମୟରେ ରଙ୍ଗମଞ୍ଚ ଉପରେ ତାଙ୍କର ଅଭିନୟ ପାଇଁ ଘୋଷଣା ଚାଲିଥିବା ବେଳେ ସେ କୌଣସି ବନ୍ଧୁ ପତ୍ନୀଙ୍କ ସହ ଗଳ୍ପରେ ବ୍ୟସ୍ତ ଥାନ୍ତି । ବହୁତ ସମୟ ପରେ ସେ ଯେତେବେଳେ ପ୍ରକୃତିସ୍ଥ ହୁଅନ୍ତି, ସେତେବେଳେ ନାଟକ ସରିବାକୁ ମାତ୍ର ଅଳ୍ପ ସମୟ ବାକି ଥାଏ । ଥରେ ସେ ଏତେ ଜୋରରେ ଆସି ମଞ୍ଚରେ ପଶିଗଲେ ଯେ, ସାମନାରେ ସଜା ହୋଇଥିବା ଦର୍ପଣଟାଏ ତାଙ୍କ ଗୋଡ ଉପରେ ଖସିପଡ଼ି ଖଣ୍ଡ ଖଣ୍ଡ ହୋଇଗଲା । ଖଣ୍ଡିଏ ରୁମାଲ କନାରେ ଗୋଡରୁ ରକ୍ତ ପୋଛୁ ପୋଛୁ ମଞ୍ଚ ଉପରେ ସେ ପୁଣି ଏପରି ସ୍ୱାଭାବିକ ଭାବରେ ଅଭିନୟ ଆରମ୍ଭ କରି ଦେଲେ ଯେ, ଦର୍ଶକ ମଣ୍ଡଳୀ ବାହାବାହା ନ କରି ରହିପାରିଲେ

ନାହିଁ । ସେଥିପାଇଁ ସେ ଅଭିନୟ ଲାଗି ତାଙ୍କୁ ଦର୍ଶକମାନଙ୍କ ପାଖରୁ ସ୍ୱର୍ଣ୍ଣ-ପଦକ ମିଳିଥିଲା ।

ଅତ୍ୟଧିକ ଶିକ୍ଷା ନ ଥିଲେ ମଧ୍ୟ ଦିବାକର ବାବୁଙ୍କର ହାସ୍ୟରସ-ଘନ ଅଭିନୟ ଥିଲା ଉଚ୍ଚକୋଟୀର । ସେ ଏଥିପାଇଁ ଗର୍ବ କରୁ ନ ଥିଲେ; ତଥାପି ଅଭିନେତାର ଗୌରବ ଯେନ କପରି ଗର୍ବ କରିବାକୁ ହୁଏ, ଏକ ନାଟକୀୟ ଢଙ୍ଗରେ ସେ ତାହା ସମସ୍ତଙ୍କୁ ବୁଝାଇ ଦେଉଥିଲେ ।

ଥରେ ଏପରି ଅଭିନୟ କରିବାକୁ ଯାଇ ସେ ନର୍ଦ୍ଦମାରେ ପଡ଼ି-ଗଲେ । ଶ୍ୱଶୁର ତାଙ୍କର ଏ ଦୁର୍ଦ୍ଦଶା ଦେଖି ସହାନୁଭୂତି ପ୍ରଦର୍ଶନ କରିଥିଲେ । ଘଟଣା ଏପରି ହେଲା ଯେ ସେ ବାହା ହେବା ପୂର୍ବରୁ ଯେଉଁ ଝିଅଟିକୁ ବିଶେଷ ପ୍ରେମ କରୁଥିଲେ, ତାଙ୍କର ବାପା ଏଇ ଦୁର୍ଘଟଣାର କିଛିଦିନ ପରେ, ତାଙ୍କ ଘରକୁ ବିବାହ ପ୍ରସ୍ତାବ ନେଇ ଆସିଲେ; ସେହି ବର୍ଷ ତାଙ୍କର ବିବାହ ମଧ୍ୟ ହୋଇଗଲା ।

ଅନେକ ବେଳେ ଅଭିନୟ ସମୟରେ ସେ ଛତା, ଚଶମା, କୋଟ୍, କଲମ ପ୍ରଭୃତି ହଜାଇ ବସନ୍ତି ଏବଂ ତା' ପରେ ଉପସ୍ଥିତ ବନ୍ଧୁମଣ୍ଡଳୀ ଉପରେ ଭୀଷଣ ବିରକ୍ତି ପ୍ରକାଶ କରନ୍ତି । ଥରେ ଚଶମାଟା ହଠାତ୍ ହଜି ଯାଇଛି ବୋଲି ସେ ଏଣେ ତେଣେ ଖୋଜିବା ଆରମ୍ଭ କରିଦେଲେ । ବନ୍ଧୁମଣ୍ଡଳୀ ମଧ୍ୟ ବ୍ୟସ୍ତ ହୋଇ ତାଙ୍କ ସହିତ ସହଯୋଗ କରିଥିଲେ । ଚଶମା ଖଣ୍ଡିକ ବମ୍ବେରୁ ଆଣିଥିବା ହେତୁ କେହି ଲୋକ ଲୋଭପରବଶ ହୋଇ ତାକୁ ହସ୍ତଗତ କରି ନେଇଛି, ଏଇ କଥା ବନ୍ଧୁ ମହଲରେ ଆଲୋ-ଚନା ଚାଲିଥିଲା ବେଳେ ଶେଷରେ ଗୋଟିଏ ହାସ୍ୟର ରୋଳ ସୃଷ୍ଟି ହୋଇ ଘଟଣାର ପରିସମାପ୍ତି ଘଟିଥିଲା । କାରଣ, ଏତେ ଖୋଜା ଖୋଜି ଶେଷରେ ଦେଖାଗଲା ଯେ, ଚଶମା ଖଣ୍ଡିକ ଦିବାକର ବାବୁଙ୍କ ନାକ ଉପରେ, ଯେଉଁଠି ଥିଲା ସେଠାରେ ହିଁ ରହିଛି ।

ଅଧିକାଂଶ ସମୟରେ ସେ କହନ୍ତି— ବମ୍ବେରେ ଥିବା ସମୟରେ ସେ ଏକ ଗୁଜୁରାଟୀ ଝିଅକୁ ପ୍ରେମ କରୁଥିଲେ । ଝିଅଟି ଅତ୍ୟନ୍ତ ସୁନ୍ଦରୀ; କିନ୍ତୁ

ବହୁତ ଅର୍ଥ ତା' ପାଇଁ ବ୍ୟୟ ଯୋଗ କରିବାକୁ ପଡ଼ୁଥିଲା । ତାଙ୍କର ସ୍ତ୍ରୀ ଏହା ଜାଣିପାରି ଜଡ଼ିମନ୍ତ୍ର ପ୍ରୟୋଗ କରି ତାଙ୍କୁ ହାତ ମୁଠାକୁ ଫେରାଇ ଆଣିଲେ । ନ ହେଲେ ସେ ଆଜି ବମ୍ବେ ଚଳଚ୍ଚିତ୍ର ଜଗତର ପ୍ରତିଷ୍ଠିତ ଅଭିନେତା ହୋଇ ପାରିଥାନ୍ତେ । ନର୍ଗିସ୍ ତାଙ୍କ ସହିତ ଅଭିନୟ କରିବା ପାଇଁ ଚୁକ୍ତି କରି-ଥିଲେ । ନିରୂପାରାୟ ତାଙ୍କ ପ୍ରତି ପ୍ରେମାସକ୍ତ ହୋଇଥିଲେ । ସୁରେୟାଙ୍କ ସହିତ ସେ ବହୁବାର ସିନେମା ଯାଇଛନ୍ତି । ବୟସ ବେଳେ ତାଙ୍କ ଦେହେର ଏତେ ସୁନ୍ଦର ଥିଲା ଯେ, ବମ୍ବେରେ ବହୁତ ଅଭିନେତ୍ରୀ ବାହା ହେବା ପାଇଁ ତାଙ୍କ ପଛରେ ଲଙ୍ଗରପଙ୍ଗର ହେଉଥିଲେ । ଗପ ପେଡି ଫିଟିଲା ତ ସତ ମିଛ ଅନର୍ଗଳ ବାହାରିଗଲା ।

ଦିବାକର ବାବୁ କହୁଥିଲା ସମୟରେ ତାଙ୍କ ମୁହଁକୁ କେହି ସମ୍ମତି ନ ଜଣାଇଲେ ସେ କ୍ଷୋଭଣ ବିରକ୍ତ ହୁଅନ୍ତି । ସୁତରାଂ ଉପସ୍ଥିତ ବନ୍ଧୁ-ମଣ୍ଡଳୀ ତାଙ୍କ କଥାରେ ତାଳ ଦେବାପାଇଁ ବାଧ୍ୟ ହେଉଥିଲେ । ଆଉ ସମସ୍ତେ ତାଙ୍କୁ ସମ୍ମାନ ଦେଖାଉଥିଲେ । ମୁଁ ମଧ୍ୟ ଦିବାକର ବାବୁଙ୍କୁ ଅଧିକାଂଶ ସମୟରେ ପରିହାସ କରୁଥିଲି । ତାଙ୍କ ପ୍ରତି ମୋର ସ୍ନେହ ଶ୍ରଦ୍ଧା ନ ଥିଲା କହିଲେ ଭୁଲ ହେବ; ତଥାପି ସେ ବାରମ୍ବାର ମୋ ଘରକୁ ଆସି ଆସର ଜମାଇବାଟା ମୁଁ ପସନ୍ଦ କରୁ ନ ଥିଲି । ଚା' କପ୍‌ଟାଏ ଖର୍ଚ୍ଚ ହେଉଥିଲା ବୋଲି ମୋର ଦୁଃଖ ନ ଥିଲା; ଅସଲ କାରଣ ହେଲା, ତାଙ୍କର ଗପୁଡ଼ପଣିଆ ଲାଗି ପିଲାମାନଙ୍କର ପାଠ ପଢ଼ାରେ ବ୍ୟାଘାତ ସୃଷ୍ଟି ହେଉଥିଲା । ବଖରାଏ ଘର ହେତୁ ପିଲାଗୁଡ଼ିକ ଶୋଇବା ପାଇଁ ହଇରାଣ ହେଉଥିଲେ । ସ୍ତ୍ରୀ ମୋର ବହୁ ସମୟ ଧରି ପରଦା ଆଢ଼ୁଆଳରେ ରହିବାକୁ ପସନ୍ଦ କରୁ ନ ଥିଲେ । କାରଣ ହେଲା, ସେ ଆଧୁନିକା ନୁହନ୍ତି । ଏଥିପାଇଁ ଅବଶ୍ୟ ଅନେକ ସମୟରେ ମୁଁ ଦୁଃଖ ପ୍ରକାଶ କରେ । କିନ୍ତୁ ମୋର ଏ ଅଭାବ ଅନଟନ ଜୀବନ ଭିତରେ ରୁଚିସମ୍ପନ୍ନା ସ୍ତ୍ରୀ ପାଇଁ ସ୍ନୋ ପାଉଡର ଓ ଦାମିକା ଶାଢ଼ୀ ଯୋଗାଇ ପ୍ରତି ସପ୍ତାହରେ ସିନେମା ଦେଖାଇ ନେବା କ'ଣ ମୋ ପକ୍ଷେ ସମ୍ଭବ ହୋଇ ପାରନ୍ତା ?

ଦିବାକର ବାବୁଙ୍କ ସ୍ତ୍ରୀ ଅତିଶୟ ଆଧୁନିକା ବୋଲି ଅଧିକାଂଶ ସମୟରେ ସେ ପ୍ରଶଂସା କରନ୍ତି । ସ୍ତ୍ରୀ ତାଙ୍କର ଘରର ସମୁଦାୟ ଦାୟିତ୍ୱ ମୁଣ୍ଡାଇ ଥିବାରୁ ସେ କୁଆଡ଼େ ସମସ୍ତ ଝଞ୍ଜାଳରୁ ମୁକ୍ତ ହୋଇ ପାରିଛନ୍ତି ।

ଏ ବୟସରେ ସୁଦ୍ଧା ସେ ସ୍ତ୍ରୀଙ୍କ ସହିତ ନିଜର ପ୍ରେମ କାହାଣୀ-ଗୁଡ଼ିକ ବର୍ଣ୍ଣନା କରିବାକୁ ଯାଇ ହସି ହସି ବେଦମ୍ ହେଉଥିଲେ । ସନ୍ତାନ ସନ୍ତତିଙ୍କ ବିଷୟରେ ବନ୍ଧୁମାନେ ପ୍ରଶ୍ନ କରିଲେ ସେ ଏଭଳି ଏକ ନାଟକୀୟ ଛଟାରେ ବୁଝାଇ ଦେଉଥିଲେ ଯେ, ଆମର ମନେ ହେଉଥିଲା, ଦିବାକର ବାବୁ ବହୁକୁଟୁମ୍ବୀ ନୁହନ୍ତି । ବାସ୍ତବିକ୍ ସବୁ କ୍ଷେତ୍ରରେ ତାଙ୍କର ଜୀବନଟା ସତେ ଯେମିତି ଥିଲା ସୁଖମୟ, ଯାହା ଫଳରେ ମୁଁ ଈର୍ଷା କରିବାକୁ ବାଧ୍ୟ ହେଉଥିଲି । ସକାଳ ନଅଟାରୁ ରାତି ବାରଟା ପର୍ଯ୍ୟନ୍ତ ମୋର ଯେଉଁ ଅକ୍ଳାନ୍ତ ପରିଶ୍ରମ ତା' ମଧ୍ୟରେ ଟିକିଏ ହସ, ଆନନ୍ଦ ମୋ ପକ୍ଷରେ କ'ଣ ମୂଲ୍ୟବାନ୍ ନ ଥିଲା ? କିନ୍ତୁ ଅର୍ଥର ଅଭାବ ଓ ପାଞ୍ଚ ପାଞ୍ଚଟା ପିଲାଙ୍କୁ ମଣିଷ କରିବାର ଚିନ୍ତା, ସମସ୍ତ ଆନନ୍ଦକୁ ଧୂଳିସାତ୍ କରି ଦେଇଥିଲା ।

କିଛିଦିନ ପରେ ସିନେମା ହଲ୍ ପାଖରେ ଦିବାକର ବାବୁଙ୍କ ସହିତ ମୋର ସାକ୍ଷାତ୍ ହେଲା । ତାଙ୍କ ପିଲାମାନଙ୍କ ସହିତ ସେ ରିକ୍‌ସାରୁ ଓହ୍ଲାଉ-ଥିଲେ । ମୋତେ ଦେଖି ଇତସ୍ତତଃ ହୋଇ ସେ କହିଲେ – "ମୋର ସିନେମା ଦେଖିବାକୁ ଇଚ୍ଛା ନାହିଁ । ବାପାଙ୍କର ଅଭିନୟ ଦେଖିବା ପାଇଁ ପିଲାମାନେ ଆଗ୍ରହୀ କିନା ! ଆପଣ ଏଠାରେ ବସନ୍ତୁ, ମୁଁ ଏମାନଙ୍କୁ ବସାଇ ଦେଇ ଆସେ – ଚା' ପିଇବା ।"

ବନ୍ଧୁ ଦିବାକର ବାବୁ ଯେଉଁ ଚିତ୍ରରେ ଅଭିନୟ କରିଛନ୍ତି ସେହି ଚିତ୍ର ମତେ ଦେଖାଇବା ପାଇଁ କେଉଁ କାରଣରୁ ଆଗ୍ରହ ପ୍ରକାଶ କଲେ ନାହିଁ ? ଏ ବିଷୟରେ ମୋ ମନରେ ଖଟକା ରହିଗଲା । କାରଣ ସେ ଚାହିଁଥିଲେ ମୋ ପାଇଁ ଖଣ୍ଡେ ପାସ୍ ଯୋଗାଡ଼ କରିପାରିଥାନ୍ତେ । ମୋ' ଭଳି ସ୍ୱଳ୍ପଆୟ ବ୍ୟକ୍ତି ପକ୍ଷେ ପଇସା ଦେଇ ସିନେମା ଦେଖିବା ସହଜସାଧ୍ୟ ନ ଥିଲା, ଏକଥା ତ ଦିବାକର ବାବୁ ଭଲ ଭାବେ ଜାଣନ୍ତି ।

ଅଳ୍ପ ସମୟ ପରେ ପରିଚିତ ହସ ଓଠରେ ଫୁଟାଇ ସେ ପ୍ରେକ୍ଷାଳୟରୁ ଫେରି ଆସିଲେ ।

"ଆପଣ ସିନେମା ଦେଖିଲେନି ?" ମୁଁ ପଚାରିଲି ।

"ନା...ମୋର ଇଚ୍ଛା ନାହିଁ, ଆପଣ ଗଲେ ନାହିଁ କାହିଁକି ?"

"ଆଶ୍ଚର୍ଯ୍ୟ ! ଆପଣ କ'ଣ ନିମନ୍ତ୍ରଣ କରିଥିଲେ ?"

"ଓହୋ...ହୋ.. ସତରେ ଭାଇ ମୁଁ ଦୁଃଖିତ ! ମୋତେ ମାତ୍ର ଖଣ୍ଡିଏ ପାସ୍ ମିଳିଥିଲା । ସାହାରେ ମୋ ସ୍ତ୍ରୀଙ୍କର ବହୁତ ସାଥୀ ଏପରି ବ୍ୟସ୍ତ କରି ପକାଇଲେ ଯେ, କାହାର ଅନୁରୋଧ ରକ୍ଷା ନ କରି ନୀରବ ରହିଗଲି ।"

"ଆପଣ ଏ ସିନେମାରେ କେଉଁ ରୋଲ୍ କରିଛନ୍ତି ?" ମୁଁ ପଚାରିଲି । ପ୍ରଶ୍ନର ଜବାବ ନ ଦେଇ ସେ ଚୁପ୍ ରହିଗଲେ ।

ମୁଁ ପୁଣି ଥରେ ପଚାରିଲି—"ଆପଣ ବୋଧହୁଏ ଜମିଦାର ହୋଇଛନ୍ତି ?"

ସେ ହଠାତ୍ ଯେପରି କ'ଣ ଭାବିବାକୁ ଲାଗିଲେ ଏବଂ କହିଲେ—"ଏଁ...ହଁ, ହଁ ଜମିଦାର, ଜମିଦାର ! ବହୁତ ବଡ଼ ଜମିଦାର !!"

"ତା'ହେଲେ ଆମେ ସବୁ ହେଲୁ ପ୍ରଜା—ଆପଣ ହେଲେ ମାଲିକ ।" ମୁଁ ଟିକିଏ ପରିସ୍ଥିତିକୁ ସହଜ କରିବା ଛଳରେ କହିଲି ।

"ହଁ ଭାଇ, ସେଥିରେ କ'ଣ ଅଛି ? ଜୀବନଟାଯାକ ଏମିତି ମିଥ୍ୟା ଅଭିନୟରେ ବିତିଯାଉ—ଓଠରେ ରଙ୍ଗ ବୋଳି ନିଜକୁ ମର୍କଟ ସଜାଇ ଦର୍ଶକମଣ୍ଡଳୀ ପାଖରେ ନାଚିବା, ନଚେଇବା, ହସିବା, ହସେଇବା ଏଇ ତ ମୋର ଜୀବନ !!"

ମୁଁ ଟିକିଏ ଈର୍ଷାନ୍ୱିତ ହୋଇ କହିଲି—"ଭଗବାନ ଆପଣଙ୍କଠାରେ ବହୁତ ଶକ୍ତି ଭରି ଦେଇଛନ୍ତି । ବାସ୍ତବିକ୍ ଆପଣ ଭାଗ୍ୟବାନ୍ । ସମାଜରେ ସୁନାମ ଅର୍ଜନ କଲେ--ଅଜସ୍ର ଟଙ୍କା ପାଇଲେ—ହସ ଖୁସିରେ ଜୀବନଟା କେତେ ଆରାମରେ..."

ସେ ଖୁବ୍ ଜୋରରେ ହସି ଉଠିଲେ—ହସି ହସି ଏକବାରେ ବେଦମ୍ ହୋଇଗଲେ । ଚଞ୍ଚଳ ଚଞ୍ଚଳ ଟ୍ରିକପ୍‌ରେ ଓଠ ଲଗାଇ ସେ ଏକା ନିଃଶ୍ୱାସରେ ଶେଷ କରି ଦେଲେ । ତା'ପରେ କିଛି କହିବାକୁ ଚେଷ୍ଟା କରୁଥିଲେ—ହଠାତ୍ ଦୋକାନ ପାଖରେ ଏକ ଗଣ୍ଡଗୋଳ ଶୁଣାଗଲା । ଦିବାକର ବାବୁ ସଙ୍ଗେ ସଙ୍ଗେ ଉଠିଯାଇ ରାସ୍ତାର କେଉଁଆଡେ ଅଦୃଶ୍ୟ ହୋଇଗଲେ ।

ଦିବାକର ବାବୁଙ୍କର ଏଭଳି ବ୍ୟବହାରରେ କିଛି ନୂତନତା ନ ଥିଲା; କିନ୍ତୁ ମୁଁ ନିଜକୁ ସଙ୍କୁଚିତ ମନେକଲି ।



ପରଦିନ ସକାଳେ ଆକସ୍ମିକ ଭାବରେ ଦିବାକର ବାବୁ ମୋ କୋଠରୀରେ ପ୍ରବେଶ କରି ମୋତେ ଉଠାଇଲେ ! ଏତେ ସକାଳୁ ଦିବାକର ବାବୁଙ୍କ ଉପସ୍ଥିତି ମୋତେ ବିରକ୍ତିକର ବୋଧ ହେଲା । ସେ ଟିକିଏ ଇତସ୍ତତଃ ହୋଇ ନିକଟରେ ଥିବା ଖଣ୍ଡିଏ ଚେୟାର୍ ଉପରେ ବସି ପଡ଼ିଲେ ।

ମୁହଁ ଧୋଇ ସାରିବାର ବହୁ ସମୟ ପରେ ମୁଁ ତାଙ୍କୁ ପଚାରିଲି "ଏତେ ସକାଳୁ କ'ଣ ଆସିଲେ ଯେ ?"

"ହଁ, ସେମିତି ଦରକାର ବୋଲି ଚାଲିଆସିଲି । ଆଶା କରେ ଆପଣ ନିରାଶ କରିବେ ନାହିଁ ।"

"ଏଇଟା ଗୋଟାଏ କଥା ନା···ଆପଣଙ୍କ ଭଳି ଆଗାବାଦୀ ଲୋକ କେବେ ନିରାଶ ହୋଇପାରେ ?"

ତାଙ୍କର ଆଖି ଟିକିଏ ଉଜ୍ଜ୍ୱଳ ହୋଇ ଉଠିଲା । ହାତରେ ପିନ୍ଧିଥିବା ଘଣ୍ଟାଟିକୁ କାଢ଼ି ସେ କହିଲେ—"ଏହାକୁ ରଖି ଶହେଟି ମୁଦ୍ରା ଦେଇ ପାରିବେ ?"

ମୁଁ ଖୁବ୍ ଜୋର୍‌ରେ ହସି ଉଠିଲି ।

ସେ ପୁନର୍ବାର କହିଲେ—"ମୁଁ ଆର ମାସ ଆଡ଼କୁ ନେଇଯିବି । ଭଲ ଘଡ଼ିଟାଏ, ଚାରି ଶହ ଟଙ୍କାରେ ବମ୍ବେରୁ କିଣିଥିଲି ।"

"ଶହେ ଟଙ୍କା କ'ଣ ଶହେ ପଇସା ଆମ ପାଖରୁ ମିଳିବା କଷ୍ଟକର । କାରଣ ଆମେ ହେଲୁ ଅଭାବୀ ଲୋକ । ଦରମା ଗଣ୍ଡାକ ପନ୍ଦର ଦିନ ଗଲେ ବାକି ପନ୍ଦର ଦିନ ଏଣୁ ତେଣୁ ଧାରଉଧାର କରି ଚଳିବାକୁ ପଡ଼ୁଥାଏ । ଆପଣଙ୍କୁ କ'ଣ ଟଙ୍କାର ଅଭାବ ଅଛି ? ସିନେମାରୁ, ଡ୍ରାମା ପାର୍ଟିରୁ ପ୍ରଚୁର ଟଙ୍କା ପାଉଥିବେ···।"

ସେ ଟିକିଏ ଅନ୍ୟମନସ୍କ ହେଲେ । କିଛି ସମୟ ପରେ ଓଠ ଧାରରେ ସାମାନ୍ୟ ହସ ଖେଳାଇ କହିଲେ—"ବୁଝିଲେ ଅକ୍ଷୟ ବାବୁ ! ରଙ୍ଗମଞ୍ଚରେ କଳାକାର ଭାବରେ ଟଙ୍କା ଅର୍ଜନ କରିବା, ଓଡ଼ିଶା ବାହାରେ ସମ୍ଭବ; କିନ୍ତୁ ଓଡ଼ିଶାରେ ଏଇଟା ଆଶା କରିବା ବୃଥା । ଗୋଟାଏ ସିନେମାରେ ଅଭିନୟ କରିଦେଲି ବୋଲି ସେମାନେ କ'ଣ ମତେ ଏତେଗୁଡ଼ାଏ ଟଙ୍କା ଦେଇ ଦେବେ ? ତା ବଦଳରେ ମୋର କେତେ କ୍ଷତି ହୋଇଛି ଜାଣନ୍ତି ? ଘଡ଼ିଟାଏ ଭାଙ୍ଗିଗଲା । ସ୍ୱେଟର୍ ଖଣ୍ଡିକ ହଜିଗଲା । ଜଳଖିଆ ପାନ ବାବଦ ହାତରୁ ପଡ଼ିଲା ନବେ ଟଙ୍କା !"

"ଆପଣ କ'ଣ କିଛି ପାଇ ନାହାନ୍ତି ?—ନିଶ୍ଚୟ ବହୁତ ଟଙ୍କା ପାଇଥିବେ ? ।"

"ଟଙ୍କାଟା ନ ହେଲା ନାହିଁ···ସେଥିରେ ମୋର ଦୁଃଖ ନାହିଁ··· କିନ୍ତୁ ଗୃହିଣୀ କ'ଣ ସେ କଥା ବୁଝନ୍ତି ?"

"ଆପଣଙ୍କୁ କ'ଣ ଟଙ୍କା ଦେବା ପାଇଁ ପ୍ରଯୋଜକ ନାସ୍ତି କରି-ଦେଲେ ?"

"ନା, ନାସ୍ତି କଲେ କହିଲେ ଭୁଲ ହେବ । ବରଂ ତାଙ୍କ ଭାଷାରେ ସେ ଏତିକି କହିଲେ ଯେ, ମୋ ଭଳି କଳାକାରଙ୍କୁ କେତେ ଦରମା ଦେବେ ତାହା ସ୍ଥିର କରିପାରୁ ନାହାନ୍ତି !"

"ସେମାନେ କ'ଣ ଏ ପର୍ଯ୍ୟନ୍ତ ସ୍ଥିର କରିପାରି ନାହାନ୍ତି ?"

"ନା ଅକ୍ଷୟ ବାବୁ, ସେମାନେ ଆଉ କୌଣସିମତେ ସ୍ଥିର କରି-ପାରିବେ ନାହିଁ । କାରଣ ମୁଁ ଜଣେ ବିଶିଷ୍ଟ କଳାକାର କନା ?" ଭୂଲତା ନାଚିଲ ସେ ପୁନର୍ବାର ତାଙ୍କର ପରିଚିତ ହସ ହସିଲେ ।

ହିତାକର ବାବୁଙ୍କର ସେହି ହସ ଟିକକ କେମିତି ଖାପଛଡ଼ା ଲାଗିଲା ମୋତେ । ତଥାପି ମୁଁ ନିଜକୁ ବିଶ୍ୱାସ କରିପାରିଲି ନାହିଁ ଯେ ହିତାକର ବାବୁ ଅଭିନୟ ଦ୍ୱାରା କିଛି ଅର୍ଜନ କରିପାରୁ ନାହାନ୍ତି । ଅନେକ ସମୟରେ ସେ ମିଥ୍ୟା କହୁଥିବାର ମୁଁ ଲକ୍ଷ୍ୟ କରିଛି । ଟଙ୍କାଟା ତ ଧର୍ମ ଗରିବ ସମସ୍ତଙ୍କ ପକ୍ଷେ ଅନିବାର୍ଯ୍ୟ ଭାବରେ ଦରକାରୀ । ଅନ୍ୟ ପାଖରେ ହାତ ପତାଇବାକୁ ହେବୁଲ ନିଜର ଦୈନ୍ୟ ପ୍ରକାଶ କରିବା ଛଡ଼ା ଅନ୍ୟ ପନ୍ଥା ନାହିଁ । ଅଭାବଟା ମଣିଷକୁ କେତେ ହୀନ କରିଦିଏ ସତରେ !!!



ପୁଅଟିର ମାଟ୍ରିକ୍ ପରୀକ୍ଷା ଫିଜ୍ ପାଇଁ ଟଙ୍କାର ବହୁତ ଦରକାର ପଡ଼ିଲା । ବହୁ ବନ୍ଧୁଙ୍କ ଦ୍ୱାରସ୍ଥ ହେବା ପରେ ମଧ୍ୟ ବାରମ୍ବାର ନିରାଶ ହେବା ଯୋଗୁଁ ମୁଁ ଅତିଶୟ ଅତିଷ୍ଠ ହୋଇପଡ଼ିଲି ! ଭଗବାନଙ୍କ ପ୍ରତି ଘୋର ଅଭିମାନ ହେତୁ ମୋର ଆଖିରୁ ବହି ପଡ଼ୁଥିଲା ଅଜସ୍ର ଲୁହ । କିରାଣୀ ଜୀବନରେ କେତେଟା ବା ଟଙ୍କା ? ସେଥିରୁ କୁଟୁମ୍ବ ଚଳାଇ ପିଲାଙ୍କୁ ମଣିଷ କରିବା କ'ଣ ସହଜ ? ପନ୍ଦର ତାରିଖରୁ ଦରମା ଶେଷ । ଦୋକାନରେ ଧାର, ପଡ଼ୋଶୀ ଘରେ ଧାର, ବନ୍ଧୁଙ୍କ ପାଖରୁ ଧାର—ଏଇ ତ ତା'ର ଜୀବନ !!

କପରି ପୁଅଟିର ପରୀକ୍ଷା ଫିଜ୍ ବନ୍ଧା ହେବ ଭାବି ଭାବି ମୁଁ ସହର ପାଖ ନଈ କୂଳରେ ଆସି ପହଞ୍ଚିଲି । ସକାଳର ସୂର୍ଯ୍ୟଟା ଅତିଶୟ ଶାନ୍ତ ମନେ ହେଉଥିଲା । ନଦୀରେ ସେମିତି କିଛି ପାଣି ନ ଥିଲା, ଆକାଶଟା ଦେଖା ଯାଉଥିଲା ବେଶ୍ ସୁନ୍ଦର । ରାସ୍ତାଟା ନିର୍ଜନ ନ ଥିଲେ ମଧ୍ୟ ଜନ ସମାଗମ

ବିଶେଷ ମାତ୍ରାରେ ଆରମ୍ଭ ହୋଇ ନ ଥାଏ । କାମ ଥିଲେ ମଧ୍ୟ ଭାବନା ବିଭୋର ହୋଇ କିଛି ସମୟ ସିମେଣ୍ଟ ଚଟାଣ ଉପରେ ବସିବାକୁ ଚେଷ୍ଟା କଲି । ହଠାତ୍ ମୋର ମନେ ହେଲା ନିକଟରେ କେହି ଜଣେ ଭଜନ ଗାଉଛି । ଇସ୍, କି କରୁଣ ସେ କଣ୍ଠସ୍ୱର !! ମୋ ଆଖିରେ ଲୁହ ଟଳମଳ ହେବାକୁ ଲାଗିଲା । ସଙ୍ଗୀତର କରୁଣ ମୂର୍ଚ୍ଛନା ବାରମ୍ବାର ମୋର କାନ ପାଖରେ ପ୍ରତିଧ୍ୱନିତ ହେଉଥିଲା । ଗୀତଟି କିଏ ଗାଉଛି ଜାଣିବା ପାଇଁ ମୁଁ ଆଗକୁ ପାଦ ବଢ଼ାଇଲି । ପବନଟା ବହୁଥିଲା ବେଗରେ । ନଦୀର ପାଣି ଧାରରେ ସୃଷ୍ଟି ହେଉଥିଲା ଅସଂଖ୍ୟ ତରଙ୍ଗ ।

କିନ୍ତୁ ଭଜନ ଗାୟକ ଯେ, ଦିବାକର ବାବୁ ! ଯାହାଙ୍କର କମ୍ପୃତ କିମାକାର ରୂପକୁ ଚାହିଁବା ମାତ୍ରେ ଏବଂ କଥାର ଖିଅ ଆରମ୍ଭ ହେବା ମାତ୍ରେ ଦର୍ଶକମଣ୍ଡଳୀ ହସି ହସି ବେଦମ୍ ହୋଇ ପଡୁଥିଲେ ତାଙ୍କର ଆଖିରେ ପୁଣି ଏତେ ଲୁହ ? ତାଙ୍କର କଣ୍ଠରେ ଏପରି କରୁଣ ସଙ୍ଗୀତର ମୂର୍ଚ୍ଛନା !!!

—ସେ ମତେ ଦେଖିପାରି ନ ଥିଲେ ।

ଆଖିରୁ ଲୁହ ସବୁ ରୁମାଲରେ ପୋଛି ଦେଇ ଗୋଟିଏ ତୂଳୀ ଧରି ଖଣ୍ଡିଏ ସାଦା କାଗଜ ଉପରେ ଆକାଶର ଛବି ଆଙ୍କିବାକୁ ଚେଷ୍ଟା କରୁଥିଲେ ସେ । ବହୁ ସମୟ ଧରି ମୁଁ ସେପରି ଠିଆ ହୋଇ ରହିଲି । ଭାବୁଥିଲି—ଦୁନିଆଟା କେତେ ରହସ୍ୟମୟ ସତରେ !

କିଛି ସମୟ ପରେ ମତେ ଦେଖିପାରି ସେ ଅଳ୍ପ ହସି କହିଲେ— "ବସନ୍ତ ! ଆକାଶଟା ବାସ୍ତବିକ୍ ବହୁତ ସୁନ୍ଦର ଦିଶୁଛି, ନୁହେଁ ?"

ମୁଁ ନୀରବ ରହିଲି ।

"—ପ୍ରକୃତିର ଏ ଅନନ୍ତ ରାଜ୍ୟ ଭିତରେ ମଣିଷ ଯଦି ନିଜକୁ ହଜାଇ ଦେଇ ପାରେ !"

ମୁଁ ଉତ୍ତର ଦେବାକୁ ଚେଷ୍ଟା କଲି ନାହିଁ ।

ମୋର ଭାବଗମ୍ଭୀର ମୁଖମଣ୍ଡଳ ଦେଖି ସେ ଟିକିଏ ହସି ଦେଇ ନିଜକୁ ସଜାଡ଼ି ନେଲେ ଏବଂ ତୂଳୀରେ ରଙ୍ଗ ନେଇ ଆକାଶର ଛବି ଆଙ୍କିବାକୁ ଚେଷ୍ଟା କଲେ ।

ମୁଁ କେବଳ ଗଣି ଲାଗିଥିଲି ତାଙ୍କର ତୂଳୀଲଗା ହାତର ସମସ୍ତ ଶିରା ପ୍ରଶିରାକୁ । ଦିବାକର ବାବୁଙ୍କ ପ୍ରତି ମୋର ଧାରଣା ଅସ୍ପଷ୍ଟ ମନେ ହେଲା । ମୁଁ ତାଙ୍କୁ ଈର୍ଷା କରୁଥିଲି କି ସହାନୁଭୂତି ଦେଖାଉଥିଲି—ନିଜେ ବୁଝି ପାରୁ ନ ଥିଲି ।



ସେ ଦିନ ବିନା ନିମନ୍ତ୍ରଣରେ ଦିବାକର ବାବୁଙ୍କ ଘରେ ଉପସ୍ଥିତ ହେଲି, ଅବଶ୍ୟ ଏହା ପୂର୍ବରୁ କେବେ ତାଙ୍କ ଘରକୁ ଯିବା ପାଇଁ ଇଚ୍ଛା ସୁଦ୍ଧା କରିନାହିଁ । ଦିବାକର ବାବୁ ଗୋଟିଏ ଦଉଡ଼ିଆ ଖଟ ଉପରେ ବସି ପାନ ଭାଙ୍ଗୁଥିଲେ । ମୋତେ ଦେଖି ଅସମ୍ଭବ ରକମର ଖୁସି ହୋଇଗଲେ । ଖଟରୁ ଉଠିଆସି ହସି ହସି ତାଙ୍କର ହାତଅଙ୍କା ଛବିଗୁଡ଼ିକୁ ଦେଖାଇବାକୁ ଲାଗିଲେ । ସାମାନ୍ୟ ଦୁଇ ବଖରା ମାଟି ଘର—କେଉଁ ଦିନରୁ ଛପର ହୋଇ ନ ଥିଲା । କିନ୍ତୁ କାନ୍ଥରେ ଅଙ୍କା ହୋଇଥିବା ନାନା ବର୍ଣ୍ଣର ଛବିଗୁଡ଼ିକ ବେଶ୍ ଆକର୍ଷଣୀୟ ଦିଶୁଥିଲା । ମାଟି କୁଣ୍ଡରେ ଅପର୍ଯ୍ୟାପ୍ତ ମଲ୍ଲୀଫୁଲ ଫୁଟିଥିଲା । ରଜନୀ ଗନ୍ଧାର ମହକ ମନପ୍ରାଣକୁ ଆଲୋଡ଼ିତ କରୁଥିଲା । ଦାରିଦ୍ର୍ୟକୁ ଲୁଚାଇବା ପାଇଁ ତାଙ୍କର ଚେଷ୍ଟା ଯେ ପୂର୍ଣ୍ଣାଙ୍ଗ—ଏହି ଧାରଣା ତାଙ୍କ ମନରେ ଦୃଢ଼ ଭାବରେ ପ୍ରକାଶ ପାଉଥିବାର ଲକ୍ଷ୍ୟ କଲି ।

ସେ ମୋତେ ପୁନର୍ବାର ପଚାରିଲେ—"ମାଟି ଘରକୁ ଦେଖି କଷ୍ଟ ଭାବୁଛନ୍ତି କି ? ଏଇଟା ମୋର ପିତୃ ଅର୍ଜିତ ସମ୍ପତ୍ତି । ଅବଶ୍ୟ ବାପା କୋଠାଘର କରିବା ପାଇଁ କେବେ ଚେଷ୍ଟା କରି ନ ଥିଲେ ।"

ଆଃ କି କରୁଣ ଚିତ୍କାର !!! ଦିବାକର ବାବୁଙ୍କ ମୁହଁ ହଠାତ୍ ବିଷଣ୍ଣ ହୋଇ ଉଠିଲା ।

"ବାପା ! ବାପା ! ବୋଉ ଭୀଷଣ ଭାବରେ ବାନ୍ତି କରୁଛି । ସେ କହୁଛି ଆଉ ବଞ୍ଚିବ ନାହିଁ । ଆପଣ ଆଉ କେବେ ତା ପାଇଁ ଔଷଧ ଆଣିବେ ?"

ଦିବାକର ବାବୁଙ୍କ ପିଠିରେ ବାଧା ଉପରେ ବାଧା ମାରି ସାନ ପୁଅ ଚିତ୍କାର କରିବାକୁ ଲାଗିଲା । ପିଲାଟିର ବୟସ ମାତ୍ର ୯ ବର୍ଷ । ଦେହରେ ମଇଳା ଛିଣ୍ଡା ଜାମା ଖଣ୍ଡିଏ, ତଳପାଖ ଅନାବୃତ । ଆଖିରୁ ବୋହି ଯାଉଛି ଧାର ଧାର ଲୁହ । ଦିବାକର ବାବୁ ଅପେକ୍ଷାକୃତ ଗମ୍ଭୀର ହୋଇ ପୁଅଟିକୁ କାନ୍ଧରେ ପକାଇ ବାହାରକୁ ଚାଲିଗଲେ । ମୁଁ ଅନ୍ୟ କୌଣସି ଦ୍ୱିଧା ଭାବ ମନ ଭିତରେ ନ ରଖି ଘର ଭିତରକୁ ପଶିଲି ।

ସେତେବେଳକୁ ଭିତରଆଡୁ ମୋ ପାଖକୁ ଦଉଡ଼ି ଆସିଥିଲା ବାର ବର୍ଷର ପୁଅ । ଘର କୋଣରେ ଦୁଇଟି ଝିଅ କାନ୍ଥକୁ ଆଉଜି ଠିଆ ହୋଇଛନ୍ତି । ସବୁରି ପୋଷାକ ପତ୍ର ଅତ୍ୟନ୍ତ ସାଧାରଣ । ଖଣ୍ଡିଆ ଦଉଡ଼ିଆ ଖଟରେ ଚାଦର ବିଛାଇ ଶୋଇଥିଲେ ତାଙ୍କର ସ୍ତ୍ରୀ । ଘରେ ସେମିତି କିଛି ଆସବାବ ପତ୍ର ନ ଥିଲା । ସାଧାରଣ ଆଲଣା ଖଣ୍ଡିଏ, ପୁରୁଣା ଅମୁଲ ଡବା କେତୋଟି ଏବଂ କେତେ ଖଣ୍ଡ ସିଲାଭର ବାସନ !! ଘରେ ଥରେ ଆଖି ବୁଲାଇ ଆଣିବାକୁ ଚେଷ୍ଟା କରୁଛି—ଗୃହିଣୀ ତାଙ୍କର ହାତ ଠାରି ଡାକିଲେ ।

"କ'ଣ କହୁଛନ୍ତି ?"

"ଆପଣ ଦିବାକର ବାବୁଙ୍କର ବନ୍ଧୁ ତ ? କିଛି ମନେ କରିବେ ନାହିଁ—ଟଙ୍କା କିଛି ଧାର ଦେଇ ପାରିଲେ, ବହୁତ ଉପକୃତ ହୁଅନ୍ତି । ପିଲାମାନେ ଦୁଇଦିନ ହେବ ଖାଇ ନାହାନ୍ତି । ଦେଖୁଛନ୍ତି ତ ଉଠି ପାରୁନି, କାହାକୁ ଯାଇ କହିବ ?"—ସେ ଧୀର ଭାବେ କହିଲେ ।

ମୁଁ କିଛି ନ କହି ନୀରବ ରହିଲି ।

ସେ ପୁନର୍ବାର ବହୁତ ଧୀରେ ଧୀରେ କହିବାକୁ ଲାଗିଲେ— "ଡ୍ରାମା ପାର୍ଟିକୁ ଟଙ୍କାଟିଏ ପାଇଲେ ନାହିଁ । ସରକାର ତ ତାଙ୍କ ପାଇଁ କିଛି ବ୍ୟବସ୍ଥା କଲେ ନାହିଁ । ଡ୍ରାମା ପେଣ୍ଡାଲ୍ କରିବା ପାଇଁ ସରକାରୀ ଋଣ ମଞ୍ଜୁର ହେଲା, କିନ୍ତୁ ତଳ କର୍ମଚାରୀମାନେ କରାଇ ଦେଲେ ନାହିଁ । ମୁଁ କେତେ କହିଲି, ସମସ୍ତେ ଯଦି ହାତ ଗୁଞ୍ଜା ଦେଇ କାମ ହାସଲ କରୁଛନ୍ତି, ଆମେ ଦେଲେ କ୍ଷତି କ'ଣ ? ଇଏ ପରା ଆଦର୍ଶ କଳାକାର !! ବୁଝିଲେ, ଜୀବନଟା ଏମିତି ବିତିଗଲା । ତାଙ୍କ ମନ ଭୁଲାଇବା ପାଇଁ ସେ ଯାଇ ବାହାରେ ହସିବେ···ଆଉ ଏ ଘରେ କିନ୍ତୁ ସବୁରି ଆଖିରୁ ସାରା ଜୀବନ ଧରି ଲୁହ ବୁହାଉଥିବେ ।"

ପୁଣି ଥରେ ହେଲା ବାନ୍ତି--ସେଥିରେ ରକ୍ତର ଛିଟା।

କାଠରେ ତିଆରି କେତେଗୁଡ଼ିଏ ଫୁଲ ଗଛର ନମୁନା ହାତରେ ଧରି ପଶି ଆସିଲେ ଦିବାକର ବାବୁ । ମୁହଁରେ ସେହି ହସ—ଅପ୍ରାକୃତିକ ଭାବରେ ଫୁଟି ଉଠୁଥିଲା ।

"ବୁଝିଲେ ଅକ୍ଷୟ ବାବୁ ! କାଠରେ ଫୁଲ କାମ ପାଇଁ ମେସିନ୍ ବମ୍ବେରୁ ମଗାଇଛି । ଏଥିରେ ବହୁ ରକମର ଖେଳନା, ନୂଆ ପ୍ରକାର ଫୁଲର ଗଛ ତିଆରି ହୋଇପାରିବ । ନାନା ଡିଜାଇନର କାଠ କାଟିବା ପାଇଁ ମୁଁ ଗୋଟାଏ ମେସିନ୍ ରଖିଛି ! ଏଥିରେ ବହୁତ ଟଙ୍କା ଲାଭ ହେବ । ଆମର ଆଉ ଏ ଅଭାବ ରହିବ ନାହିଁ । ଅବଶ୍ୟ ସରକାରୀ ଋଣ ମିଳିଲେ ସୁବିଧାରେ କାରଖାନା ଆରମ୍ଭ ହୋଇ ପାରନ୍ତା ।

"ସରକାରୀ ଋଣ ???"—ମୁଁ ଗମ୍ଭୀର ହୋଇ ପଚାରିଲି ।

"ହଁ ହଁ ମତେ ନିଶ୍ଚୟ ଋଣଟା ଶୀଘ୍ର ମିଳିଯିବ···ମୁଁ ଜଣେ ବିଶିଷ୍ଟ କଳାକାର କି ନା ??"

—ସେ ପୁନର୍ବାର ହସୁଥିଲେ !!

ଇସ୍ କି କରୁଣ ସେ ହସ ଟିକକ । ଅଭିନେତାର ଆବରଣ ତଳେ ସମସ୍ତ ଦୁଃଖ ଓ ଯନ୍ତ୍ରଣାର ଦଳକା ଦଳକା ରକ୍ତ ଝରି ଆସୁଥିଲା ତାଙ୍କର ସେ ହସ ଭିତରେ !!

—ମୋର ନୀରବ କଟାକ୍ଷ ତାଙ୍କୁ ଅପ୍ରସ୍ତୁତ କରି ପକାଇଲା ।

# ପୋଖରୀ ଭିତରେ ଭୋଟଦିଆ

ପାଣି ଉପରୁ ଲୁଙ୍ଗି ଲେଉଟାଇ ଅାଣିଲେ କନ୍ଦର୍ପ ବାବୁ । ଜ଼ମା ଜ଼ମା ଆଖି ଦି'ଟା ତାଙ୍କର ଆହୁରି ଟିକିଏ ଭିତରକୁ ପଶିଗଲା । ଓଠରୁ ଫୋଟକାଟିକ ଖସି ପଡ଼ିଲା । ତୁଣ୍ଡ ଭିତର କଣ୍ଢାଗୁଡ଼ାକ ଚଟ୍‌ପାଟ୍ ହୁଣ୍ଡିଗଲା ଯେପରି ।

ସତରେ ତାଙ୍କର ଗୋଟାଏ ବିରାଟ ଭୁଲ ହୋଇଗଲା । ତୁମର ନମସ୍କାରଟିଏ ପାଇ ସେ ନିଜକୁ ଭୁଲିଗଲେ କିପରି ? ତାଙ୍କର ସମସ୍ତ ଜନ୍ତୁଗୁ ହରାଇ ବସିଲେ ? ନମସ୍କାର ଆଉ ମୋଣ୍ଡି ପାଣ୍ଠିଆଁ ଭିତରେ ବିଟେଟ ତଫାତ୍ ରହିଲା କେଉଁଠି ? ଗୋଟାଏ ହୁଏତ ଧନର ମୋହ ଆଉ ଗୋଟାଏ ସମ୍ମାନର ମୋହ !!

ଆଖି ଆଗରେ ତାଙ୍କର ଭାସି ଆସିଲା ପୂର୍ବ ଦିନର ସମସ୍ତ ଘଟଣା— 'କଇଁ ନାଡ ଧରି ପାଟି କରି ମାଡ଼ି ଆସୁଥିବା ଅସଂଖ୍ୟ ଜନ୍ତୁଂକ ଧାଡ଼ି । "ଶେଉଳ ପେଟରେ ଭୋଟ ଦିଅନ୍ତୁ" । "ଦେଶରୁ ଦୁର୍ନୀତି ଲୋପ ହେଉ", "ଗଡ଼ଶ ସରକାର ଗାଦି ଛାଡ଼ୁ, ଶେଉଳ ନେତା ସରକାର ଗଢ଼ୁ" । କନ୍ଦର୍ପ ବାବୁ ସତରେ ସେ ଦିନ ନ ହସି ରହିପାରି ନ ଥିଲେ । କିଛି ନ ବୁଝି ବୁଡ଼ାଦଳ ବାବୁ ମଧ୍ୟ ଯୋଗ ଦେଇଥିଲେ ସେଥିରେ । ଭଲ ରୂପେ କଥାଟା ବୁଝାଇ ଦେବାକୁ ଯାଇ କନ୍ଦର୍ପ ବାବୁ ସେ ଦିନ ଆରମ୍ଭ କରିଦେଲେ ତାଙ୍କର ବକ୍ତବ୍ୟ ।

"ପୋଖରୀ ମୁଲକଯାକ ଭୋଟ ଭୋଟ ବୋଲି ଚହଲ ପଡ଼ିଛି । କାହାକୁ ତୁମେ ଭୋଟଦେବ କହିଲ ? କେଉଁ ନେତାଟି ଭଲ ଭଲ ? ସତପଣିଆ ଭୋଟ ଦିଆ ସରିଲା ପରେ ଜଣାପଡ଼ିବ । ତମର ଗରଜ ପଡ଼ିଛି ବୋଲି ତମେ ଆମର ଲାଞ୍ଜ ଧରୁଛ—କହିଲ, ଭଗବାନ ପରି ସ୍ୱୟଂ ବିପଦ ବେଳେ କୋଉଁଆର ଲାଙ୍ଗୁଡ଼ ଧରିଥିଲେ ? ତମର ଭୋଟ ବିପଦ କାଟିଗଲେ, ହୁଁ ···

ଡାକଲେ ପରା ଟିକଏ ଆଉ ଆଗରେ ଗୃହୀ ହେବନ ? କହିଲେ, କହିବ ---ତୁମେ ? ଏ···ଏ· ·କାହିଁ ମୁଁ ତୁମକୁ କେଉଁଠି ଦେଖିଲା ପରି ମନେ ହେଉନ ? କେମିତି ଦେଖିଥାନ୍ତେ ? ଆଖିରେ ତ ନେତା ପରଳ ଚଢ଼ିଯାଇଛି ।

ଏମାନଙ୍କୁ ପୁଣି ଭୋଟ ଦେବ ? ଆର ଥର ଗଡ଼ଣ ନେତାଙ୍କୁ ସରକାର କରାଗଲା । କାହିଁ କଣ ଭଲା ଆମ ମୁଲକର ଅଧିକା ଉନ୍ନତଟେ କରି ପକେଇଛନ୍ତି ? ଗରିବଙ୍କ ତଣ୍ଟି ଚପି ଟିକସ ନେଇ ଓଲଟି ପ୍ରିୟାପ୍ରୀତି କରି ଉପୁର ଉଡ଼ିବା ଦିନକୁ ଦିନ ବଢ଼ି ଚାଲିଛି ।"

ବୁଢ଼ାଦାଳ ବାବୁ ଆହୁରି ଟିକଏ ଝୁଙ୍କେଇ ପଡ଼ି ଗାଲେପିଟିକୁ ସଜାଡ଼ି କହିଲେ - "ଏଇ ଦେଖୁ ନାହାନ୍ତି, ଆମର ଗେଣ୍ଡା ବାବୁଙ୍କ ଘରେ ପଙ୍କ ଟିକଏ କ ନାଉ ଟିକଏ ବି ନ ଥିଲା—ଏବେ ଯାଅ ଦେଖିବ—ଗଡ଼ଣ ନେତାଙ୍କ ସାହାଯ୍ୟ ପାଇ ଭକୁର ଘିଅ ଖାଇ ପୋହଳା ଦୁଧରେ ମୁହଁ ଧଉଛନ୍ତି ପରା ?

"—ଆଉ ଏଣେ ଆମ ନେଉଳ ବାବୁଙ୍କୁ ଦେଖ" ବୁଢ଼ାଦାଳ ବାବୁ କଥାଟିକୁ ସଜାଡ଼ି କହିଲେ—"ଜନ୍ମଠୁ ସଙ୍କୋଚ । ଗୁରି ଦିନରେ ଥରେ ମୁଢ଼ି ତାଙ୍କୁ ଖାଇବାକୁ ଜୁଟେନ । କାହିଁ କେଉଁ ନେତା ଭଲା ଏ ଖବର ରଖୁଛି ? ଗୋଧି ଗାଡଠାରୁ ଜୋକ ଗାତ ପର୍ଯ୍ୟନ୍ତ । ଯେଉଁଆଡେ ଦେଖିବ ଏଇ ହାଓ୍ୱା, ଏଇ ଚଳଣି ?"

କଉଡ଼ିବ ବାବୁଙ୍କର ସ୍ୱର ଆହୁରି ଚଞ୍ଚଳ ହୋଇ ଉଠିଲା । ସେ ପୁଣି ଆରମ୍ଭ କଲେ--"ବୁଝିଲେ ଭୁଡ଼ାଦାଳ ବାବୁ, ରାଇଜର ଯେଉଁ ବିପତ୍ତି ପଡ଼ିଲା—ଏଇ ନେତାମାନେ ମତ ଦେଲେ—"ଭଗବାନ ଦାୟୀ ! କାହିଁକି ? ଶତ୍ରୁ ସଙ୍ଗେ ସୋଦର ପଣିଆ ଦେଖେଇ ରାଇଜ ବୁଲାଇ ଆଣିଲ । ସେ ତ ହୁଙ୍କାରେ ରହିବା ଜଣୁ, ମହାନ ନେଲକ୍—ତାକୁ କୋଠାଏ ବିଶ୍ୱାସ କଣ ?, ରାଇଜ ବୁଲି ସବୁଆଡ ଦେଖି ନେଲା । ଆଉ ବେଳ ଉଣ୍ଡି ବିଷ ଦାନ୍ତ

ପକାଇଲା । ଆମ ଭିତରୁ କେତେ କେତେ ତାଙ୍କ ମୁହଁରେ ଗଲେ । ତେବେ ଯାଇ ଆମ ନେତାଙ୍କ ମୁଣ୍ଡରେ ଚେତା ପଶିଲା ।

ଅଥଚ କେଉଁ ନେତା ଭଲ ତାଙ୍କର କାଉଛିଡ଼ା ଧନରୁ ଉଜାଡ଼ି ପକାଇଲେ ? ଭୋଗ ବିଳାସ କଣ କିଛି କମିଗଲା ? ନା ଉପୁରି ଲୁଟା ଉଣା ହୋଇଗଲା ? ଇଏ ପୁଣି ସରକାର –ଅଙ୍କର ପୁଣି ଗୋଟାଏ ମାତ୍ର !! ନା···ନା···ମୁଁ କାହାକୁ ଭୋଟ ଦେବି ନାହିଁ ।" କଉଡ଼ିବ ବାବୁ ଶେଷ ନିଷ୍ପତ୍ତି କଲେ ସେ ଜମାରୁ ଭୋଟ ଦେବାକୁ ଯିବେନି ।

କୁଡ଼ାଦଳ ବାବୁ ମଧ୍ୟ ଶେଷ ସିଦ୍ଧାନ୍ତରେ ପହଞ୍ଚି କହିଲେ— "କାହିଁକି ଆମେ ଏମାନଙ୍କୁ ଭୋଟ ଦେବା ମ ? ରାଜନୈତିକ ଦୁର୍ନୀତି ବଢ଼ାଇବା ପାଇଁ ?"

ନମସ୍କାର ଆଜ୍ଞା !—ହଠାତ୍ କିଏ ପଶି ଆସିଲେ ଜଣେ ଆଗନ୍ତୁକ । ପାଣି ଢେର ଭିତରେ ନେଉଛି ଚଢ଼େ—ଏକା ନିଶ୍ୱାସରେ କହି ଲାଗିଲେ – ଦେଶର ଦୁର୍ନୀତି ବିଷୟ ---"ଏ ଗଢ଼ଣ ନେତା ସରକାର ଗଢ଼ିଲା । ଦେଶର ଦୁର୍ନୀତି ବଢ଼ିବାକୁ ଲାଗିଲା । ପୁଞ୍ଜିପତି ଯିଏ ସୁଖରେ ରହିଲା- ଗରିବଙ୍କ ପେଟ କେଉଁଠି ଘରେ ପଡ଼ିଲା । ନେତାଙ୍କର ଦୂର ସମ୍ପର୍କୀୟ ମାମୁଁ ପୁଅ ଭାଇର—ସବୁର ପୁତୁରାକୁ ଉଚ୍ଚ ଆସନରେ ନିଯୁକ୍ତ ଦିଆଗଲା । ତାଙ୍କ ଦେଖାଦେଖି ଚାଙ୍ଗୁଡ଼ିଠାରୁ ଗେଣ୍ଡା ପର୍ଯ୍ୟନ୍ତ ସବୁ ମହଲରେ ଏଇ କଥା !

"ହଁ, ହଁ, ଜୁହେଁ ଯେ, କଣ" ?—କଉଡ଼ିବ ବାବୁ ଜଳୁଛି ପ୍ରତି ସଦୟ ହୋଇ ପଡ଼ିଲେ । "ଏହିକ୍ଷଣି ସେ କଥା ଭାବୁଥିଲି । ଉପରେ ପାହିଆର ଉପୁରି ଧନରେ ଅନ୍ତତଃ ମୂଳକର ନଅଙ୍କିଆ ସମସ୍ୟା ତ ସମାଧାନ ହୋଇପାରନ୍ତା ? ନା କଣ କହୁଛନ୍ତି ?"

"ନିଶ୍ଚୟ ନିଶ୍ଚୟ – ସେଥିପାଇଁ ପରା···ହେଁ···ହେଁ···ମୁଁ ଆପଣଙ୍କୁ କହିବାକୁ ଚାହେଁ···ଏ···ଏ···ଆପଣ ଜଙ୍ଗଡ଼ା ଗୋଡରେ ଭୋଟ ଦିଅନ୍ତୁ— ଦେଖିବେ ସବୁ ସମାନ ହୋଇଯିବ—କଳା, ଧଳା ହୋଇଯିବ – ଧଳା, କଳା ହୋଇଯିବ—ଧନୀ ଗରିବ ସବୁ ସମାନ ହୋଇଯିବେ । ସ୍ୱର୍ଗକୁ ପାହାଚ ପଡ଼ିବ -- ଜନ୍ତୁମାନେ ସବୁ ଶୂନ୍ୟରେ ଉଡ଼ିବେ ।···

"ରଖ—ରଖ ହେ—ତୁମର ବକ୍ତୃତା—ଦେଖିଛି, ଦେଖିଛି—ବହୁତ ନେତାଙ୍କୁ ମୁଁ ଦେଖିଛି ! କହନ୍ତା, ତୁମେ କଙ୍କଡ଼ା ଗୋଷ୍ଠୀର ନେତା ହୋଇଥିବ ?" "କହିଲେ ବାବୁଙ୍କର ଆଉ ଶୁଣିବାକୁ ଧୈର୍ଯ୍ୟ ନ ଥିଲା । ସେ ମିଛାସଲଖ କହି ପକାଇଲେ, "ହଁ ହେ—ଭୋଟ ଦେବା ପୂର୍ବରୁ ସମସ୍ତେ ଏମିତି କହନ୍ତି ... । ତୁମ ମତ ଆମେ ଭଲ ଭାବରେ ଜାଣୁ । ତମକୁ ନେତା ରୂପରେ ବାଛି, ଛୁଞ୍ଚିରେ ବାଲିଆ ଚମର ମୁଦ ମାରି—ଆମେ ଆମର ସ୍ୱାଧୀନତା ଟିକକୁ ବଳି ଦେବାକୁ ଚାହୁଁନାହୁଁ ।—ହୁଁଃ । ଧର୍ମ ଗରିବଙ୍କୁ ସମ୍ମାନ କରିବା ଜନ୍ତୁ ତମେ କିଏ ହେ ? ଯେତେ ଦିନ ପର୍ଯ୍ୟନ୍ତ ଜନ୍ତୁମାନେ ନିଜ ନିଜର ଭୁଲ ବୁଝିପାରି ନାହାନ୍ତି ତମେ କଣ ତାଙ୍କୁ ବଦଳାଇ ପକାଇବ ? ଯାଅ.. ଯାଅ...ମୋର ଶେଷ ନିଷ୍ପତ୍ତି ହୋଇସାରିଛି ମୁଁ ଏଥର କାହାକୁ ଭୋଟ ଦେବ ନାହିଁ ।"

"ତୁ ତାହେଲେ ଭୁଲ କରୁଛୁ କଉଡ଼ିବ ଭାଇ—ନମସ୍କାର ।"—ଜଣେ ଆଗନ୍ତୁକ ଭିତରକୁ ପଶି ଆସି ମନ୍ତବ୍ୟ ଦେଲେ ।

"କିଏ ବୃନ୍ଦାବନ୍ ?—ନମସ୍କାର ! ନମସ୍କାର ! କଣ ବହୁତ ଦିନ ପରେ ଦେଖା ! ଭଲ ଅଛୁ ?"

"ଆରେ ଭଲ ଭୋଟ ଦିଆ ସରିଲେ ଭଲ ମନ୍ଦ ପଚାରିବୁ—ତେବେ ତୋର ନିଷ୍ପତ୍ତିଟା ମୁଁ ମୋଟେ ପସନ୍ଦ କରିପାରୁନି । ଯେତେ ହେଲେ ଭାଇଜ ପାଇଁ ତୋର ତ ପୁଣି ଗୋଟାଏ କର୍ତ୍ତବ୍ୟ ଅଛି ?"

"ମୁଁ ଅବଶ୍ୟ ମନା କରୁନି—ତେବେ ଏ ଯେଉଁ ଦୁର୍ନୀତିଟା ମୁଁ ମୋଟେ ପସନ୍ଦ କରିପାରୁନି ।"

ଅପ୍ରସ୍ତୁତ ହୋଇ କଙ୍କଡ଼ା ଗୋଷ୍ଠୀର ନେତା ସେତେବେଳକୁ ମୋଟକା ଫଟେଇ ଫଟେଇ ଚାଲିଗଲେ । ବୁଢ଼ାଦଳ ବାବୁ ମୁରୁକି ହସି ମେଲାଇ ତାଙ୍କ ପ୍ରତି ଗାଳେସି ନିର୍ଦ୍ଦେଶ କରିଥିଲେ ।

କଉଡ଼ବ ବାବୁଙ୍କର ପାଟିରୁ ସତରେ ମେଞ୍ଚାଏ ଫେଣ ଛମି ପଡ଼ିଲା । ବୃଦ୍ଧଟି କିଛି ନ ବୁଝି ହସି ଦେଇଥିଲେ ।—"କେରେ କଥା କଣ ?"

"ହୁଁ ଏ ଯେଉଁ ଢଙ୍କଣା ଗୋଡ଼ର ନେତା ମ ? ଦେଶର ବିପତ୍ତି ପଡ଼ିଲା ବେଳେ ଏମାନେ ପର ଶତ୍ରୁଙ୍କୁ ସପୋର୍ଟ କରୁଥିଲେ ? ଏବେ ଆସିଛନ୍ତି ଖୋସାମତ କରିବାକୁ ! ଏମାନଙ୍କ ମତକୁ ମୁଁ ମୋଟେ ପସନ୍ଦ କରେନା । ଏ ଯୁଗରେ କାହାକୁ ଭଲା ତୁମେ ଭୋଟ ଦେବ ? କେଉଁ ଜନ୍ତୁଟି ସତୋଷ ?

"ହେଁ, ହଁ, ନୁହେଁ ଯେ, କଣ ? କିନ୍ତୁ ଭୋଟ ଦିଆ ବନ୍ଦ ହେଲେ ସରକାର ତ ରହିବେନି ଶାସନ ଚଳିବ କିପରି ?"

"ଏହା ବୋଲି ଜାଣି ଜାଣି ଏପରି ଅପଦାର୍ଥଗୁଡ଼ାକୁ ନେତା କରିବା ?—"ବୁଢ଼ାଦଳ ବାବୁ ଖୁବ୍ ଜୋର୍‌ରେ ପ୍ରତିବାଦ କଲେ !

"ନା, ନା, ତୁମେମାନେ ଏଇଥର ବିଶ୍ୱାସ କର—ଦେଶରୁ ଏ ଦୁର୍ନୀତି ଘୁଞ୍ଚାଇ ଦେବା ପାଇଁ—ଆମେ ଖାସ୍ ଅଲଗା ଇକାଣି ଦଳ ଗଢ଼ିଛୁ । ଶେଢ଼ଳ ଦଳ ଅବଶ୍ୟ ଆମ ସହିତ ପ୍ରତିଯୋଗିତା କରୁଛି । କିନ୍ତୁ ଜନ୍ତୁମାନଙ୍କର ଯଦି କିଛି ହୃଦୟ ଥାଏ ତେବେ ନିଶ୍ଚୟ ଆମର ଦଳ ସରକାର ଗଢ଼ିବ ବୋଲି ମୋର ଦୃଢ଼ ବିଶ୍ୱାସ ।"

"ସତରେ ? ଆଚ୍ଛା ତା ହେଲେ ମୁଁ ତୁମ ନେତାଙ୍କୁ ଏଥର ଭୋଟ ଦେଉଛି । କେବଳ ମୁଁ କାହିଁକି, ଆମ ମୂଲକର ସମସ୍ତ ଜନ୍ତୁ ତୁମ ନେତାଙ୍କୁ ଏଥର ଭୋଟ ଦେବେ । ନା କଣ କହୁଛନ୍ତି ଦଳବାବୁ ?" --କଉଡ଼ବ ବାବୁ ଟିକିଏ ଜୋର ଦେଇ କହିଲେ ।

"ହେଁ ହଁ ନିଶ୍ଚୟ ନା—ବୁଝିଲେ ବୃଦ୍ଧ ବାବୁ ! ସେ ଭାର ଆମରି କଉଡ଼ବ ବାବୁଙ୍କ ଉପରେ ରହିଲା ।"

"ହେଁ, ହଁ, ନିଶ୍ଚୟ, ନିଶ୍ଚୟ ।"

"ଦେଖ ତୁମେମାନେ ଯଦି ଲଗି ପଡ଼—ତେବେ ନିଶ୍ଚୟ ଆମ ନେତା ସରକାର ଗଢ଼ି ପାରିବେ । ଆଚ୍ଛା ଚାଲେ ସବୁ ଘର ଲାଗିଲା ଘାଇ—ମୁଁ ଯାଏ ଭୋଟ ବୁଥରେ ପୁଣି ଦେଖା ।"

"ଅଚ୍ଛା, ଅଚ୍ଛା ।"

"ନମସ୍କାର ।"

"ନମସ୍କାର ।"

ବୃନ୍ଦାବନ ବାବୁ ମଧ୍ୟ ପହଁରି ପହଁରି ଗୃହାଗତେ । କଉଡ଼ିବ ବାବୁଙ୍କର ପାଟିରୁ କୃତଜ୍ଞତାର ଗାର ଲିଭି ନ ଥାଏ ତଥାପି ।

ବାପା ! ବାପା ! ବୋଉ କହୁଛି ଗଡ଼ଶ ମୁଣ୍ଡରେ ଭୋଟ ଦେବା ପାଇଁ—ଆଉ ଭାଇ କହୁଛନ୍ତି ଶେଉଳ ପେଟରେ ଭୋଟ ଦେବା—"

"ହଁ ହଁ ତୁ ଯା' କଙ୍କଡ଼ା ଗୋଡ଼ରେ ଭୋଟ ଦେଇ ଦେବୁ । ଡାକ କୋଉଠିକାର—ଡାକ ତୋ ବୋଉକୁ ?"

"ହେଇଟି—ବୋଉ ଆସିଲାଣିତ ?"

"କଣ କ ?"—ସ୍ତ୍ରୀ ପଚାରିଲେ ।

"ଆହା ହା ଲାଜ ଅଛି କ ? କଣ ଗଡ଼ଶ ନେତାଙ୍କ ପ୍ରେମରେ ପଡ଼ିଗଲଣି କହୋ ?"

"ଏ କ କଥା ମ ? ମୁଁ କାହିଁକ କାହା ପ୍ରେମରେ ପଡ଼ିବ ? ସେମାନେ ସବୁ କହୁଥିଲେ ଗଡ଼ସ ନେତା ଭଲ—ସେ ସରକାର ଗଢ଼ିଲେ ଘରେ ଖାଲି ସମୁଦ୍ର ମୂଲକରୁ ମୋତି ଆଣି ବାଣ୍ଟି ଦେବେ । ଆଉ—।"

"ଆଉ ସ୍ୱର୍ଗକୁ ବାଟ ଫିଟେଇ ଦେବେ—ତମକୁ ନେଇ ବୈକୁଣ୍ଠ ଦେଖେଇ ଆଣିବେ । ତୁ ପଙ୍କ ଗାତରେ ତ ଜନମ ହୋଇଥିଲୁ । ମୁଣ୍ଡରେ ବୁଦ୍ଧି କେଉଁଠୁ ଆସିବ ? ଓହୋ' ଗଡ଼ଶ ନେତାଙ୍କ ଯୋଗୁଁ ତମ ଘାଇ ଆଉ ମାମୁଁ ନେଣ୍ଟୁ ମୁହଁରେ ଗଲେ ।"

"ସତରେ ?" ସାନ ସୁଅଟିର ଚାଲ ପାଟି ଟିକଏ ଆଗକୁ ବାହାରି ପଡ଼ିଲା । ସ୍ତ୍ରୀଙ୍କର ପିଠିରେ ଦରଜକ ଠିଆ ହୋଇଗଲା । ମୃତ ଘରର ସମସ୍ତ ସ୍ମୃତି ତାଙ୍କ ଆଗରେ ଭାସି ଆସୁଥିଲା ବୋଧହୁଏ—ସେ ହଠାତ୍ ଅଣେଇ ହୋଇ ପଡ଼ିଲେ । କଉଦ୍ଭବ ବାବୁ କିନ୍ତୁ ସେତେବେଳେ ହସି ଦେଇଥିଲେ । ଅବସ୍ଥାଟିକୁ ସମ୍ଭାଳିବାକୁ ଯାଇ ସେ କହିଲେ —

"ନାଚମ—ମୋ କଥା ମାନ । ଏଥର ଇଲେକ୍‌ସନ୍‌ରେ ଭୋଟ ଦିଅ । ସେ ସରକାର ଗଢିଲେ ଆମର ମଙ୍ଗଳ ହେବ ।"

ସ୍ତ୍ରୀ ଟିକଏ ସିଧା ହେଲେ । ନାକ ପାଖର ବାଳଟିକୁ ଗାଲେସି ଉପରକୁ ବୁଲାଇ ଆଣି—ଲମ୍ବା ନିଶ୍ୱାସଟାଏ ପକାଇଲେ ।

"କଣ ମନେ ରହିଲା ?" କଉଦ୍ଭବ ବାବୁ ଆଉ ଥରେ ସ୍ତ୍ରୀଙ୍କୁ ପଚାରିଲେ ।

"ହଁ ମ ଇଲେକ୍‌ସନ୍ ପିଠିରେ ତ ? ମୁଁ ତା ହେଲେ ଯାଉଛି । ବୁଢ଼ି ଅପା, ମେଞ୍ଚିଆ ଅପା, ପୋହଳା ହେଲେକାଙ୍କୁ କହିଦେବି ।"

"ଆଚ୍ଛା ଆଚ୍ଛା ଯାଅ ..." ସ୍ୱାମୀସୁଲଭ ଗୌରବ ନେଇ ସ୍ତ୍ରୀଙ୍କୁ ବିଦାୟ ଦେବା ପାଇଁ ସେ ଖଣ୍ଡେ ଦୂରକୁ ଆଗେଇ ଯାଇଥିଲେ ସେ ଦିନ ।

ଦୁଇ

ପର ଦିନ ସକାଳ । ନେଳିଆ ପାଣି ଉପରେ କୁହୁଡ଼ି ଘେରି ରହିଛି । ପବନରେ ପାଣି ଦୋହଲି ଉଠୁଛି । ପାଇଜପାକ କଇଁଫୁଲରେ ସଜା ହୋଇଛି । ପଦ୍ମକେଶର ଉପରେ କଳମ୍ବ ଲଟା ଦେଇ ସିଙ୍ଗଡ଼ାରେ କଳସି ବସିଛି । ଗୃହଆଡ଼ ଶିଉଳି ରଙ୍ଗରେ ଝାପା ହୋଇଛି । ଢୁଲଢୁଲ ପକାଇ ଲାଗିଛି ବେଙ୍ଗୁଲି ନାଚ । ସ୍ୱର ତୋଳୁଛି ବେଙ୍ଗ ରାଜା । ତୋଡ଼ ତାର ମୁନିଆ ମୁଣ୍ଡକୁ ବାଡ଼େଇ ବାଡ଼େଇ ତାଳ ପକାଇ ଲାଗିଛି ଚଟାଲ ଚମଡ଼ା ଉପରେ ।

ଯନ୍ତ୍ରମାନଙ୍କ ଆନନ୍ଦ କହିଲେ ନ ସରେ । ସେମାନେ ଆଜ ଭୋଟ ଦେବେ, ନୂଆ ସରକାର ବାଛିବେ । ନାଶ ପୁଲର ଧାଡ଼ି ଧାଡ଼ି ହୋଇ ବୃକାଛନ୍ତି ଟଙ୍ଗୁଡ଼ି ଦଳ—ତା ପଛକୁ ପୋହଳା ଦଳ, କଣ୍ଟିଆ ଦଳ । ନାକିଆ ପାଟି ଦେଖାଇ ହଳାଙ୍କୁଳା ଗୃଲୁଛନ୍ତି କେରାଣ୍ଡି ଦଳ । କଇଁଛ ଦଳ ଆଉ ଯୋକ ଦଳ ଧିମେଇ ଧିମେଇ ବାହାରିଛନ୍ତି । ସର୍ ସାର୍ ଛୁଟି ବୃଲିଛନ୍ତି କୋଚଆମାନେ । କେଞ୍ଚୁଆ ବଡ଼ିଶ ତ ବଙ୍କେଇ ବଙ୍କେଇ ଗୃଲିଛି । ସବା ଶେଷରେ ଗାଲେସି ଫୁଲାଇ, ଡେଣା ହଲାଇ, ଲାଞ୍ଜ ବିସ୍ତାର କରି ବାହାରିଲେ ବଡ଼ବଡ଼ିଆ ଦଳ—ବାଲିଆ, ମାଗୁର, ଭାକୁର, ରୋହି ଇତ୍ୟାଦି । ସମସ୍ତଙ୍କ ପାଟିରୁ ଫେମେଣ ଖସି ପଡ଼ୁଥାଏ ଟୁପ୍ ଟାପ୍, ଫୁସ୍ ଫାସ୍, ଗପ ଲମ୍ବିଛି ବାଟଯାକ । କିଏ କେଉଁଥିରେ ଭୋଟ ଦେବ ?

ଭେଟ୍ ପଡୁଛି ! ଦଳ ଦଳ ଜନ୍ତୁ ଠିଆ ହୋଇଛନ୍ତି । ଜଳଙ୍ଗମାନେ ପହରା ଦେଉଛନ୍ତି । ଜଣ ଜଣ ହୋଇ ଭେଟ୍ ଭିତରକୁ ପଶି ଯାଉଛନ୍ତି । ପୁଣି ହସି ହସି ବାହାରି ଆସୁଛନ୍ତି । ଲାଞ୍ଜ ହଲାଇ କଳା ଛିଟିଛିଟିଆ ପୋଷାକ ମଡ଼େଇ କଉଡ଼ିବ ବାବୁ ସବୁଠାରେ ସେ ଦିନ ଭାରି ଖୁସୀ ମିଜାଜରେ ଚକର ଦେଉଥାନ୍ତି ।

କାହିଁ ସେ ବୃଦ୍ଧଗୁଣ୍ଡୁଚା ? କାହିଁ କେଉଁଠି ତାର ଇଲାକାଁ ନେତା ? କାଲି ଆସି ତ ପଦ କ ନାଡ଼ି ଖଣ୍ଡେ ଦେଇ ଗଲେନି.. ଆଉ ଆଜ ଆସି ପଦେ କଥା କହିବା ତ ଦୂରେ ଥାଉ, ଦେଖା ମଧ ନାହିଁ । କଉଡ଼ିବ ବାବୁ ପୁଣି ଥରେ ଭେଟ୍ ଘର ପାଖେ ଖୋଜ ଲଗିଲେ । ଆରେ ଯାଃ ! କାହିଁ କିଏ ତ କେଉଁଠି ଦିଶୁ ନାହାନ୍ତି ? କୁଆଡ଼େ ଗଲେ ସବୁ ??

"ଆଜ୍ଞା ନମସ୍କାର !"

"ଓ···କିଏ ? ଗଡ଼ଙ୍କ ନେତା ? ନମସ୍କାର ନମସ୍କାର !" କଣ ଭଲ ଅଛନ୍ତି ? କଉଡ଼ିବ ବାବୁଙ୍କର ପାଟି ଆହୁରି ଟିକିଏ ମେଲା ହୋଇଗଲା !

"ଆଜ୍ଞା ଆପଣଙ୍କ ଦୟାରୁ···"

"ଆଚ୍ଛା, ଆଚ୍ଛା ··ମୁଁ ବର୍ତ୍ତମାନ ଆସୁଛି ।"

ଜନ୍ତୁଟା ପ୍ରକୃତରେ ଘରି ନମ୍ର । ମୋ ପ୍ରତି ତାର କେତେ ଖାତିର ଅଛି ଦେଖ ତ ? ସେ ଗୋଟାଏ ମୂଲକର ସରକାର । ଯାହା ହେଉ ମତେ ନମସ୍କାରଟାଏ ପକାଇଲା ତ ? ଆଉ ଏ ଯେଉଁ ଇଲାଣି ନେତା ! ହୁଁ:— ଏ ପୁଣି ସରକାର ଗଢ଼ିବ ? ଦେଶକୁ ଏକାବେଳେ ଦୁର୍ନୀତି ଘୁଞ୍ଚାଇ ଦେବ ? ଜନ୍ତୁଟା କେତେ ଦାୟିତ୍ୱଜ୍ଞାନ ସତରେ ? ନେତା ହେଲେ ଏ ପୁଣି ଆମକୁ ଶାସନ କରିବ ? ତା କଥାରେ କଣ ଅଛି ମ ? ଭୋଟ ଦିନରେ ତା ଦଳର କୌଣସି ଜନ୍ତୁଙ୍କୁ ଡେରା ପାଖରେ ଦେଖା ନାହିଁ । ମତେ ଯେତେବେଳେ ଗୋଟାଏ ଦାୟିତ୍ୱ ଦିଆ ହୋଇଥିଲା, ମୁଁ ତାହା ଭଲ ରୂପେ କଲି କି ନାହିଁ—ଖବର ରଖିବା ପାଇଁ ମଧ୍ୟ ତା ମୁଣ୍ଡରେ ବୁଦ୍ଧି ନାହିଁ !

ଆଉ ଗଡ଼ଶ ନେତା ? ଯାହା ହେଉ ଜନ୍ତୁଟାର ତ ଦାୟିତ୍ୱ ଜ୍ଞାନ ଅଛି ? ସରକାର ମାନେ ଭଲ ମନ୍ଦ ଉଭୟ ଗୁଣ—ପ୍ରାୟ ଥାଏ । ଆଉ ଇଲାଣି ନେତା ସରକାର ଗଢ଼ିଲେ ଯଦି କମେ ଦୁର୍ନୀତି କରି ବସେ ?

କାହିଁ, ଗଡ଼ଶ ନେତା ତ ଦେଶର ଯଥେଷ୍ଟ ଉନ୍ନତି କରିଛି ? କେତେ ଜାଗାରେ ଆଳୁଅ । କେତେ ଡେରା । ଭିନ୍ନ ଭିନ୍ନ ଜଗାରେ କେତେ ଶିକ୍ଷା ଘର ଚିକିତ୍ସା ଘର···ହୁଁ···ହୁଁ···କେତେ କଣ ଉନ୍ନତି କରିଛି । ଏ ଯେଉଁ ବିପତ୍ତି ପଡ଼ିଲା କିଏ ଆମ୍ଭମାନଙ୍କୁ ବଞ୍ଚାଇଲା ? ପୁରୁଣା ସରକାର ଦେଶର ଭଲ ମନ୍ଦ ସବୁ ଜାଣିଛି । ଆଉ ନୂଆ ଯିଏ ସରକାର ହୋଇ ଆସିବ—ଦେଶର ବିପତ୍ତି ସମୟରେ ସ୍ୱଭାବ ଖୋଜୁ ଖୋଜୁ ଯୁଗ ବଦଳି ଯିବ । ଆଉ ସରକାର ନ ଥିଲେ ଶାସନ ଚଳିବ କିପରି ? ନା ନା । ପ୍ରକୃତରେ ଗଡ଼ଶ ସରକାରଙ୍କୁ ଭୋଟ ଦେବା ଉଚିତ ।

ଆସ୍ତେ ଆସ୍ତେ ଡେରା ଭିତରକୁ ପଶି ଆସିଲେ କଉଡ଼ବ ବାବୁ । ତର୍ଜଣୀରେ ଟିକିଏ ପଙ୍କ ଦାଗ ଲଗାଇ ଗଡ଼ଶ ମୁଣ୍ଡରେ ଭୋଟ ଖଣ୍ଡିକ ପଟ୍‌କିନା ଗଳେଇ ଦେଲେ । ଯାହାହେଉ ଗୋଟାଏ ବଡ଼ କାମ ହୋଇଗଲା । କଉଡ଼ବ ବାବୁ ବେପରବାୟ ଭାବରେ ବାହାରି ଆସିଲେ ପଦାକୁ ।

"କ'ଣ ଭୋଟ ଦେଲ ? କେଉଁଥିରେ ?" କଉଡ଼ବ ବାବୁ ଘର ଆଗନ୍ଦର ସହିତ ସ୍ତ୍ରୀଙ୍କୁ ପଚାରିଲେ ।

"କେଉଁଥିରେ ଆଉ କ'ଣ ମ ? କାଲି ସନ୍ଧ୍ୟା ପର୍ଯ୍ୟନ୍ତ ଆମେ ସମସ୍ତେ ଠିକ୍ କରିଥିଲୁ ଉଲଗି ପିଟିରେ ଭୋଟ ଦେବାକୁ । ଗଡଣ ସରକାର ପରି ମୂଲକ ମୂଲକ ବୁଲି ଜଣକ ପିଚ୍ଛା ପାଞ୍ଚଏ କରି ମୋଡ ବାଣ୍ଟିଲେ । ପାଞ୍ଚଏ ମୋଡ ଫେରାଇ ଦେବ କପରି କହିଲ ? ଆମେ ସମସ୍ତେ ଗଡଣ ମୁଣ୍ଡରେ ଭୋଟ ଦେଲୁ ।"

"ଏଁ କଣ କଲ ? ମୋଡ ରଖି ପୁଣି ଗଡ଼ଣ ନେତାଙ୍କୁ ଭୋଟ ଦେଲ ? ଦୁର୍ନୀତି କଲ । ମୁଁ ପରା ତୁମକୁ ମନା କରିଥିଲି ? ଆଉ ହେବନି ହେବନି—ଭୋଟ ତ ଦେଲ ଦେଲ, ପୁଣି ମୋଡ ରଖିଲ ? ତମେ ପୁଣି ମୋ ସ୍ତ୍ରୀ ହୋଇ ???" କଉଡ଼ିବ ବାବୁ ଆଉ କିଛି ଭାବ ପାରିଲେ ନାହିଁ ତାଙ୍କର ଯେମିତି ମନେ ହେଲା ସେ ମଧ୍ୟ ଦୁର୍ନୀତି କରିଛନ୍ତି । ମୁଣ୍ଡ ତାଙ୍କର ଚକର ଦେଲା; ପାଣିଗୁଡ଼ାକ ଓଲଟି ପଡ଼ିଲା ଯେପରି······

× × ପ୍ରକୃତରେ ଏ ଯୁଗରେ ଯେ ମୋଡ ଜମେଇଲା ସେ ହେଲା ନେତା, ସେ ହେଲା ବଡ଼ ଜନ୍ତୁ । ତାଙ୍କୁ ସମସ୍ତେ ଦୂରରୁ ନମସ୍କାର ପକାଇଲେ । ଆଉ ଯାର ମୋଡ ନାହିଁ—ସେ ଗଲା ଫସରଫାଟି । ଉଲଗି ନେତାର ଯଦି ଆଜି ମୋଡ ଥାନ୍ତା, ସେ କଣ ମୂଲକଯାକ ବୁଲି ମୋଡ ବାଣ୍ଟି ପାରି ନ ଥାନ୍ତା ? ତା'ର କେତେ ଜନ୍ତୁ ଦ୍ୱାର ପାଖରେ ଠିଆ ହୋଇ ଯାଇଥାନ୍ତେ ଭୋଟ ଦେବା ପାଇଁ ଆସୁଥିବା ଜନ୍ତୁଙ୍କୁ କୃତ୍ରିମ ସ୍ୱାଗତ ଜଣାଇବା ପାଇଁ !

ଓଃ ! ସେ କଣ କଲେ ? ଓଃ ! ଓଃ !—କଉଡ଼ିବ ବାବୁ ନିଜ ଓ ଲାଞ୍ଜ ବାଡ଼େଇ ଲାଗିଲେ । ପୂର୍ବ ଦିନର ସମସ୍ତ ବକ୍ତୃତା ତାଙ୍କର କାନ ମୂଳରେ ଯେପରି ପ୍ରତିଧ୍ୱନିତ ହେବାକୁ ଲାଗିଲା । ସେ ଆଉ କିଛି ଭାବି ପାରିଲେ ନାହିଁ ।

"ବାପା ବାପା !"

"ଏଁ"।

"ବାପା ତମେ କେଉଁଥିରେ ଭୋଟ ଦେଲ ?"

"ତୋ ମୁଣ୍ଡ ଗଣ୍ଡିରେ—ଗୃଳ ଯା କହୁଛି ।"

"ନାଇ ମ, ବୋଉ ପଚ୍ଚାରୁଛି—ତମେ କେଉଁଥିରେ ଘୋଷ ଦେଲ ?"

"ଏଁ—ହଁ ଗଡ଼ଣ ମୁଣ୍ଡରେ ।"

"ହେଁ ହେଁ···ତମେ ଗଡ଼ଣ ମୁଣ୍ଡରେ, ଆମେ ଗଡ଼ଣ ମୁଣ୍ଡରେ ।"

ସ୍ତ୍ରୀଙ୍କ ଆଖି ଉଜ୍ଜ୍ୱଳ ହୋଇଗଲା ସେ ପଟ୍‌କନା କହି ପକାଇଲେ—"ହଁ ମ ସେଇ ଏକା ଜାଗାରେ !"

କଉଡବ ବାବୁଙ୍କର ପାଟିରେ ଆଉ ଭାଷା ନ ଥିଲା । ସେ ଲଞ୍ଜାଟିକୁ ପିଠି ଉପରେ ଲଦି ଗାଲେସି ପାଖରେ ମୁହଁ ଗୁଞ୍ଜି ନୀରବ ହୋଇଗଲେ ! × × ×



# ପିଠା

ଆଗ୍ରହ ସହକାରେ ଦେବା ପାଇଁ ଇଚ୍ଛା ନ ଥିଲେ ସୁଦ୍ଧା ଖାଇବା ବେଳେ ଅତିଶୟ୍ୟ କଷ୍ଟ ହେଉଥାଏ ପଦ୍ମଜାଙ୍କୁ । ସେ କଳ୍ପନା କରି ଲାଗୁଥିଲେ ୪୦ ବର୍ଷ ତଳକୁ ସେ ଚାଲି ଯାଇଛନ୍ତି ଏବଂ ପିଠା ଖଣ୍ଡିକ ଖୁବ୍ ଆଗ୍ରହର ସହିତ ଖାଇ ପାରୁଛନ୍ତି ।

ଉପର ଘର ପିଣ୍ଡା ଉପରେ ବୋହୂଟି ଠିଆ ହୋଇ ଚାହିଁ ରହିଛି । ପୁଅ ସାଙ୍ଗରେ ସେ ଦିଲ୍ଲୀରୁ ଆସିଛି । କାଉଁଟିଆ ଘରଟି ଆନନ୍ଦରେ ଭରି ଉଠିଛି—ତାଙ୍କ ମନରେ ଆନନ୍ଦ ଦେବା ପାଇଁ ବୋହୂ ପିଠା ତିଆରି କରିଛି । ନ ଖାଇଲେ ତାର ଭାରି ମନ କଷ୍ଟ ହେବ ନା ! ନା ! ସେ ବୋହୂ ମନରେ ଆଘାତ ଦେବାକୁ ଚାହାନ୍ତି ନାହିଁ । ଏହିଭଳି ଗୋଟାଏ ଆଘାତ ବହୁ ବର୍ଷ ଧରି ତାଙ୍କର ମାନସ ପଟରେ ଛପି ରହିଛି ।

"କଣ ଖାଉଛ ? ପିଠା ?" ବୃଦ୍ଧ ସ୍ୱାମୀ ଥର ଥର ଓଠରେ ପଚାରିଲେ ସ୍ତ୍ରୀଙ୍କୁ ।

"ହଁ ବୋହୂ କରିଛି । ଭାରି ଭଲ ଲାଗୁଛି ।"

"ଏଁ ! କଣ କହିଲ ? ତମେ ସେ ପିଠା ଖଣ୍ଡାକ ଖାଇ ପାରୁଛ ? ଇସ୍ ! କି ଟାଣ—ମୁଁ ମୋଟେ ଖାଇ ପାରିଲି ନାହିଁ ।"

"ଆସ୍ତେ ଆସ୍ତେ କୁହ ! ବୋହୂଟା ସେଇଠି ଠିଆ ହେଇଛି ପରା ? ଶୁଣିଲେ ମନ କଷ୍ଟ କରିବ ।"

"ତମର ତାହା ହେଲେ କେତୋଟି ଦାନ୍ତ ଏ ପର୍ଯ୍ୟନ୍ତ ଅଛି ?"

ଚମକି ପଡ଼ିଲେ ପଦ୍ମଜା ! ଅଜାଣତରେ ଜିଭଟା ବୁଲି ଆସିଲା । ମାତ୍ର ଦୁଇଟି ଦାନ୍ତ ! ସତରେ ସେ ବହୁତ ବୁଢ଼ୀ ହୋଇ ଗଲେଣି । ସଂସାରଟା ତାଙ୍କୁ ନିଃସହାୟ ମନେ ହେଲା । ତାଙ୍କର ମନେ ହେଲା ଯେପରି ସମସ୍ତେ ତାଙ୍କ ପାଖରୁ ଦୂରେଇ ଯାଉଛନ୍ତି !

ନିକଟରେ ବୃଦ୍ଧ ସ୍ୱାମୀ—ଆଃ କି କରୁଣ ଆଖି ଦିଓଟି ତାଙ୍କର !! ପଦ୍ମଜା ଆତୁର ଟିକିଏ ସ୍ୱାମୀଙ୍କ ପାଖକୁ ଲଗି ଆସି କହିଲେ— "ସତରେ' ମୁଁ ପିଠାଟି ଖାଇପାରୁ ନାହିଁ ।"

ତାଙ୍କର ଆଖି ଆଗରେ ଭସି ଆସିଲା ଅତୀତର ଏକ କରୁଣ ସ୍ମୃତି !!

× × × ଚଇତର ଏକ ମଧ୍ୟାହ୍ନ । ବଡ଼ ପୁଅ ସ୍କୁଲକୁ ଚାଲି ଯାଇଥାଏ ! ସ୍ୱାମୀ ରମେଶ ବାବୁ ସନ୍ଧ୍ୟା ନ ହେଲେ ଅଫିସରୁ ଫେରୁ ନାହାନ୍ତି—ନୀରବ ମଧ୍ୟାହ୍ନଟା—ପ୍ରେମ ରସରେ ପ୍ଲାବିତ ହୋଇ ଉଠିଲେ ଷଷ୍ଠ କଣ ? ଭଞ୍ଜ କବିଙ୍କ ନାୟିକା ଲବଣ୍ୟବତୀ !—ନିଜକୁ ପ୍ରେମିକାର ଶ୍ରେଷ୍ଠ ଆସନରେ ବସାଇ ପଦ୍ମଜା ଯେପରି ରମେଶ ବାବୁଙ୍କ ଅପେକ୍ଷାରେ ଅସ୍ଥିର ହୋଇ ଉଠୁଥିଲେ···ତାଙ୍କୁ ମନେ ହେଉଥିଲା – ରମେଶ ବାବୁଙ୍କର ଫେର୍ଘ କେତେ ଘଣ୍ଟାର ବ୍ୟବଧାନ—ଯେପରି ଅନେକ ବର୍ଷର ବ୍ୟବଧାନ । ଲବଣ୍ୟବତୀ କାବ୍ୟର ବର୍ଷା ବର୍ଣ୍ଣନା—ତାଙ୍କୁ ଉଦ୍‌ଭ୍ରାନ୍ତ କରି ପକାଉଥିଲା—ବିରହ ବର୍ଣ୍ଣନାରେ ସେ ଯେପରି ଅସ୍ଥିର ହୋଇ ପଡ଼ୁଥିଲେ । ଅଜାଣତରେ ତାଙ୍କ ଆଖିରୁ ଲୁହ ମଧ୍ୟ ଝରି ଆସୁଥିଲା ।

ହଠାତ୍ ସେ ପ୍ରକୃତିସ୍ଥ ହେଲେ – ଭିକାରୁଣୀ ବୁଢ଼ୀଟିଏ ଡାକି ଲଗିଛି । ଡାକୁ ! ସେ ଉଠିବେନି —ମଣିଷକୁ ଟିକିଏ ପଢ଼େଇ ସୁଦ୍ଧା ଦେଉ ନାହାନ୍ତି ଏମାନେ ? ରାଧାଗୋବିନ୍ଦ ବାବୁଙ୍କ ସ୍ତ୍ରୀ ତୁଣ୍ଡରେ ଗୀତ ଅନର୍ଗଳ !! ସବୁବେଳେ ପଢ଼ୁଛନ୍ତି ସେ—ତାଙ୍କୁ ଏ ଘରେ ସମୟ କାହିଁ ??

"ମୁଠେ ମିଳୁ ମା·· ଦୟାକରି ଲେ ଝିଅ···"

ଓଃ ! ଆଉ ପଢ଼ି ହେବନି—କେଉଁଠୁ କାଙ୍ଗାଳୁଣୀଟାଏ ଆସି ମଣିଷକୁ ବ୍ୟସ୍ତ କରି ପକାଉଛି । ରାଗ ତମ ତମ ହୋଇ ଚୌକିରୁ ଉଠିଲେ ସେ । ଟିଣରୁ ମୁଠାଏ ଚାଉଳ ନେଇ କବାଟ ଖୋଲିଲେ ପଦ୍ମଜା ।

"ନେ—ମାଗିବୁ ତ ଏତେ ପାଟି କରୁଛୁ କାହିଁକି ? ଆମକୁ କେତେ ଶୁଭୁଛି ସେ ।"

"ମୁଠାଏ ଖାଇବାକୁ ଦେ ଝିଅ ? ଦେଖ ପେଟ—୫ ଦିନ ହେଲା କିଛି ଖାଇନି—ଆଉ ଚାଲିପାରୁନି । ଚାଉଳ କଣ କରିବ ?"

"ନାହିଁ ନାହିଁ ମିଳିବନି—ଚାଲିଯା···ଟିକିଏ ସୁଦ୍ଧା ପଡ଼ିଲେ ଛାଡ଼ିବେନି ଏଗୁଡ଼ାକ । ଧଡ଼୍‌କିନା କବାଟଟା ଲଗାଇ ଦେଲେ ସେ !"

କବାଟ ସେପଟରୁ ଶୁଣାଗଲା ଏକ ଦୀର୍ଘଶ୍ୱାସ । ଫେରି ପଡ଼ି କବାଟ ଫାଙ୍କରେ ମୁହଁ ଗଳେଇ ଚାହିଁ ଲାଗିଲେ ପଦ୍ମଜା । ବୁଢ଼ୀଟି ଧୀରେ ଧୀରେ ଉଠିବାକୁ ଚେଷ୍ଟା କରୁଛି । ପାଟିରୁ ବୋହି ଆସିଥିବା ଶୁଖିଲା ଛେପ ଓଠ ସନ୍ଧିରେ ଲାଗି ରହିଛି । ପେଣ୍ଡୁଆ ଆଖିରେ ମେଞ୍ଚାଏ ଲୋତକ—ଓହଳି ଥିବା ଚମ ଭିତରୁ ଅସ୍ଥି କଙ୍କାଳ ଯେପରି ଗଣି ହୋଇଯାଉଛି । ଇସ୍ କି କଷ୍ଟରେ ଚାଲୁଛି ସେ ??

ଛୁନ୍ଦର ସମସ୍ତ ଜମକ ଓ ଆଦ୍ର ରସର ଆକର୍ଷଣ ବୁଢ଼ୀର ହେଜିଲା ନିଶ୍ୱାସ ସହିତ ମିଳେଇ ଯିବାକୁ ଲାଗିଲା---ସେ କବାଟ ଖୋଲିଲେ ।

"ଏ ବୁଢ଼ୀ ! ଆସେ, ଆସେ---ଭାତ ଖାଇବୁ ?"

ବୁଢ଼ୀଟି ଫେରିଲା ଏଥର—ବୁଢ଼ୀର ହାତ ଗୋଡ଼ ଥରୁଥିଲା । କିଛି ସମୟ ପରେ ବେଲାଏ ପଖାଳ ନେଇ ଆସି ବୁଢ଼ୀର ବେଲାରେ ଢାଳି ଦେଲେ ପଦ୍ମଜା । ତା ସାଙ୍ଗକୁ କିଛି ଭଜା ଓ ଶାଗ କି କୃତଜ୍ଞତା ଭରି ରହିଥିଲା ବୁଢ଼ୀଟିର ଆଖିରେ ?? ସେ ସେଇଠି ବସି ଖାଇ ଲାଗିଲା ଭାରି ଆଗ୍ରହର ସହିତ ।

"ତୋ ପିଲାମାନେ ଖାଇଁଥାନ୍ତୁ ଝିଅ ।—କେତେ ଧର୍ମ କଲୁ ।"

"ତୋର କଣ କିଏ ନାହିଁ କି ଲୋ ମାଉସୀ ?" ଦାକ୍ଷିଣ୍ୟର ଗୌରବରେ ସେମିତି ଠିଆ ହୋଇ ପଚାରିଲେ ପଦ୍ମଜା ।

ବୁଢ଼ୀଟି ଟିକିଏ ନୀରବ ହୋଇଗଲା—ତା ପରେ କହିଲା—"ସମସ୍ତେ ଥାଇ କଣ ହେବ ଝିଅ—ହାତ ଗୋଡ଼ ଚଳୁଥିଲା ପର୍ଯ୍ୟନ୍ତ ସମସ୍ତେ ନିଜର—ମୁଁ ବୁଢ଼ୀ ହେଇଗଲି—କାମ କରିପାରିଲି ନାହିଁ—ପୁଅ ବୋହୂ ମତେ ତଡ଼ି ଦେଲେ ।"

"ଛାଡ଼ ଦେଲେ ? ଆହା···ସଂସାରଟା କ ସ୍ୱାର୍ଥପର ସତରେ ?" ତାଙ୍କର ଯେମିତି ମନେ ହେଲା—ସେ ଖୁବ୍ ବୁଢ଼ୀ ହୋଇଯାଇଛନ୍ତି— ତାଙ୍କର ପୁଅ ବୋହୂ ତାଙ୍କୁ ଚଡ଼ି ଦେଉଛନ୍ତି·····। ଓଃ ! କ କଷ୍ଟ ? !!

ସେହି ଦିନଠାରୁ ପ୍ରାୟ ଅଧିକାଂଶ ଦିନ ବୁଢ଼ୀଟି ଆସି ତାଙ୍କ ପାଖରେ ଖାଇଯାଏ । ପଦ୍ମଜା ଭାରି ଆଗ୍ରହର ସହିତ ଖାଇବାକୁ ଦିଅନ୍ତି ତାକୁ ।

ପିଠାଟିକୁ ଅଜାଣତରେ ରେକେଟି ଲାଗିଲେ ପଦ୍ମଜା । ସତରେ ପିଠାଟି ଟାଣ ହୋଇଛି—ଖାଇ ହେଉନି । ବୋହୂଟା ଆଗ୍ରହରେ କରିଛି— ବିଚାରି ନୂଆ କରି ପିଠା କରି ଶିଖୁଛି ।—ନ ଖାଇଲେ ତା ମନରେ କଷ୍ଟ ହେବ ।

ସେ ଦିନ ବୁଢ଼ୀ ଭାରି ଅନୁନୟ ହୋଇ ତାଙ୍କୁ ପିଠା ମାଗିଥିଲା ? ବହୁ ଦିନ ହେଲା ପିଠା ଖାଇନି । ତୁ ତ ମୋ ଝିଅ— ତତେ ମନ କଥା କହିବନି ତ କାହାକୁ କହିବ ? ପଦ୍ମଜା ସତରେ ସେ ଦିନ ଭାରି ଖୁସୀ ହୋଇ ଯାଇଥିଲେ । ପିଲାଟି ଦିନରୁ ତାଙ୍କର ମା ମରି ଯାଇଥିଲେ । ସେଥିପାଇଁ ବୁଢ଼ୀର ଝିଅ ଡ଼ାକରେ ସେ ଯେପରି ଆତ୍ମହରା ହୋଇ ପଡ଼ନ୍ତି । ବୁଢ଼ୀଟିକୁ ଦେଖିଲେ ତାଙ୍କ ମନରେ ମାୟା ଜନ୍ମେ । କେଉଁଦିନ ଶାଗ ଖରଡ଼ା ଟିକିଏ, ମାଛ ତରକାରି ଟିକିଏ, ଭଜା ଟିକିଏ ସାଇତି ରଖନ୍ତି ।—ବୁଢ଼ୀ ଆସିଲେ ଖାଇବ ! ଆଜି ଭଲ ପିଠା ଖଣ୍ଡିଏ ଦେଇ ପାରିବେ ନାହିଁ କାହିଁକ ?

ଭାରି ଆଗ୍ରହର ସହିତ ଖଣ୍ଡ ଖଣ୍ଡ ନଡ଼ିଆ ପକାଇ ତେଲରେ ଭଜା ପିଠା ତିଆରି କଲେ ପଦ୍ମଜା । ଭାରି ଭଲ ହୋଇଛି—ପିଠା ଖାଇ ବୁଢ଼ୀଟି କେତେ ଖୁସୀ ହୋଇଯିବ ?-ବିଚାରି !!

ପରଦିନ ସକାଳୁ ବୁଢ଼ୀଟି ଆସିଲା । ପିଠାର ପ୍ରଶଂସା ଶୁଣିବା ପାଇଁ ପଦ୍ମଜା ଆଗ୍ରହର ସହିତ ବୁଢୀକୁ ବସିବାକୁ କହିଲେ ।

"ପିଠା ଖାଇଲୁ ମାଉସୀ ?—କେମିତି ଲାଗିଲା ? ଭଲ ହୋଇ ନ ଥିଲା ?"

ବୁଢ଼ୀଟି ନୀରବ ହେଲା । କାନିର ଗଣ୍ଠି ଖୋଲିଲା ସେ । ତା ପରେ ପାଏ ଅରୁଆ ଚାଉଳ ଓ ଫାଳିଏ ନଡ଼ିଆ ପଦ୍ମଜାଙ୍କ ହାତକୁ ବଢ଼ାଇ ଦେଇ ବୁଢ଼ୀଟି କହିଲା—

"ନେ ଲୋ ଝିଅ ! ଏତକ ବାଟି ଚକୋଉ ପିଠା କରି ଦେବୁ"—ନମା ସଙ୍ଗାତ ଝିଅ ଏତକ ଦେଇ ଯାଇଛି । ଟିକିଏ ନରମ କରି କରିବୁ । କାଲି ଯେଉଁ ପିଠା ଦେଇଥିଲୁ ଭରି ଟାଣ ହୋଇଥିଲା—ଖାଇ ପାରିଲି ନାହିଁ । ହେଇ ଦେଖ୍, ସେମିତି ଥୁଆ ହୋଇଛି । କଣ କରିବ ? କୁକୁରକୁ ଦେଇ ଦେବ । "

ଅଭିମାନରେ ଫୁଲି ଉଠିଲେ ପଦ୍ମଜା । କେତେ ଖୁସିରେ ସେ ପିଠାଟି ଦେଇ ଥିଲେ—ଏତେ ଗର୍ବ ତା'ର? ନ ଖାଇଲା ଯଦି ଫିଙ୍ଗି ଦେଇ ଥାନ୍ତା, ଆଉ ପଚାରିଲେ କହିଥାନ୍ତା—"ଖାଇଛି" । ସେଥିରେ ପୁଣି—ନଡ଼ିଆ ଆଉ ଅରୁଆ ଚାଉଳ ? ଇସ୍ କପରି ଭାବରେ ଉପହାସ କରି ଲଗିଛି ସେ ପଦ୍ମଜାକୁ ?—ତାଙ୍କର କଣ ଚାଉଳ ନ ଥିଲା ? ପୁନର୍ବାର କହିଥିଲେ ସେ କ'ଣ ଚକୋଉ ପିଠାଟିଏ ଦେଇ ପାରି ନ ଥାନ୍ତେ ? ନା କେବେ କିଛି ଦେଇ ନାହାନ୍ତି ???

"ନା ନା ଚାଉଳ ନେଇଯା—ଆଉ କାହାକୁ ଦେବୁ ଯିଏ ତତେ ନରମ ପିଠା କରି ଦେବ । ମୁଁ ପିଠା କରି ଜାଣେନି ଆଉ କେବେ ମତେ କିଛି ମାଗିବୁନି କହୁଛି" ।—କଣ୍ଠ ଚାପି ହୋଇ ଆସିଲା ତାଙ୍କର—ଧଡ଼୍ କିନା କବାଟଟିକୁ ବନ୍ଦ କରିଦେଇ ଚାଲି ଆସିଲେ ପଦ୍ମଜା । ଗରିବ ବୁଢ଼ୀଟି ପ୍ରତି ଅଭିମାନ କେତେ ଦୂର ସମୁଚିତ, ତାହାର ବିଚାର ପାଇଁ ଶକ୍ତି ନ ଥିଲା ତାଙ୍କର । କିପରି ଏକ ମମତା ତାଙ୍କ ହୃଦୟକୁ ଅଧିକାର କରିଥିଲା—ଯାହା ଫଳରେ ସେ ମର୍ମାହତ ହୋଇ ପଡ଼ୁଥିଲେ । × × ×

ସେହିଦିନ ଠାରୁ ସେ ଆଉ ବୁଢ଼ୀଟିକୁ ଦେଖି ନାହାନ୍ତି । ବୁଢ଼ୀର ଅନୁପସ୍ଥିତି ବଡ଼ ଅସ୍ୱସ୍ତିକର ବୋଧହେଲା ପଦ୍ମଜାଙ୍କୁ । ପ୍ରତିଦିନ ସେ ଅପେକ୍ଷା କରନ୍ତି । ବୁଢ଼ୀର "ଝିଅ" ଡାକ ତାଙ୍କର କାନ ପାଖରେ ପ୍ରତିଧ୍ୱନିତ ହେବାକୁ ଲାଗେ—ସେ ବ୍ୟସ୍ତ ହୋଇ ପଡ଼ନ୍ତି । ଏକ ଶୁଖିଲା ଦୀର୍ଘଶ୍ୱାସ ବାହାରି ଆସେ ତାଙ୍କ ଛାତି ଭିତରୁ । ବିଶେଷତଃ ପର୍ବ ପର୍ବାଣିରେ ଘରେ ପିଠା ହେଲେ ସେ ବ୍ୟସ୍ତ ହୋଇ ପଡ଼ନ୍ତି । ବୁଢ଼ୀଟି ଖଣ୍ଡିଏ ନରମ ପିଠା ଖାଇବାକୁ କେତେ ଇଚ୍ଛା କରିଥିଲା ? କେଉଁଠି ପଡ଼ିଥିବ ? କଣ ଖାଉଥିବ ?

ପଦେ କଥାରେ ଅଭିମାନ କରି ଗୃହିଗଲି ?—ପଦ୍ମଜା ଆଉ ଭାବି ପାରନ୍ତିନି ! !

"ବୋଉମ ? ପିଠାଟି ତମେ ଖାଇ ପାରୁନ ବୋଧହୁଏ"—ବୋହୁ ଅନୁଜା ପଚ୍ଚରିଲେ ।

"ଏ ହଁ—ବେଶ୍ ଖାଇ ପାରୁଛି—ଫୁଲିଛି—ନରମ ହୋଇଛି" ।

"ନା'ମ ବୋଉ; ସତରେ ପିଠାଟି ଭାରି ଟାଣ ହୋଇଗଲି ? ବରି ଟିକିଏ କମ ଦେଇଥିଲି । କା'ଲି ବେଶୀ ନଡ଼ିଆ ବାଟି ଚକୋଉ ପିଠା କରି ଦେବି । ଫୁଲିଥିବ—ନରମ ହୋଇଥିବ—ତମକୁ ବେଶ୍ ଭଲ ଲାଗିବ !"

"ଏଁ କଣ କହିଲୁ ? ଚକୋଉ ପିଠା ? ନା ଥାଉ—ମତେ ଏ ପିଠାଟି ଭାରି ଭଲ ଲାଗୁଛି ଯେ"......ଆଖିରୁ ଝରି ଆସିଥିବା ଲୁହ ବୁନ୍ଦା ପୋଛି ଦେଇ ପିଠା ଖଣ୍ଡିକ ଚଞ୍ଚଳ ଚଞ୍ଚଳ ରେକେଟି ଲାଗିଲେ ପଦ୍ମଜା ! !



# ଅଲକ୍ଷ୍ୟରେ

ନରହରି ବାବୁଙ୍କ ନିକଟରେ ପ୍ରତ୍ୟେକ ମାସର ତିନି ତାରିଖ ସକାଳଟି ଆନନ୍ଦ ଓ ବ୍ୟଗ୍ରତାର ସୂର୍ଯ୍ୟୋଦୟ ବୋଲି ମନେ ହୁଏ । ଠିକ୍ ଏହାର ପରଦିନ ତାଙ୍କର ମୁଖମଣ୍ଡଳ ତଥା ଶରୀରର ସମସ୍ତ ସ୍ନାୟୁ ଉପରେ ଏକ ନୀଳାଭ ଆସ୍ତରଣରେ ଆବୃତ ହୋଇ ଯାଏ । ତାଙ୍କର ବନ୍ଧୁମାନେ ଏହା ଲକ୍ଷ୍ୟ କରି ନିଜ ନିଜ ଭିତରେ ଆଲୋଚନା ଚଳାନ୍ତି ।

ନରହରି ବାବୁ ଥିଲେ —ଶାନ୍ତଶିଷ୍ଟ ଅଥଚ ଗମ୍ଭୀର ପ୍ରକୃତିର ଲୋକ । ସେ ମେଳାପୀ ନୁହନ୍ତି କହିଲେ ଭୁଲ ହେବ । ତେବେ ଉଦାସୀନତାର ଅନ୍ତରାଳରେ କୌଣସି ଏକ ଗୋପନୀୟ ବ୍ୟଥା ମନ ଭିତରେ ଗୁମୁରି ଉଠିଥିଲା ଭଳି ମନେହୁଏ । ସମସ୍ତଙ୍କର ଅଲକ୍ଷ୍ୟରେ ଆଖି ପଡ଼ା ଦୁଇଟିକୁ ବାରଂବାର ମକଚିବାର ଦେଖି ଯଦି କେହି ପଚାରି ବସେ, ବୟସର ଦୋଷ ଯୋଗୁ ଏଣିକି ଆଉ ଏକ ଦାମିକା ଚଶମା ନିହାତି ଦରକାର ବୋଲି ସେ ସହଜ ଭାବରେ ଉତ୍ତର ଦେଇଥାନ୍ତି ।

ବନ୍ଧୁ ମହଲରେ ହସ ପରିହାସରେ ଭାଗ ନେବା ତାଙ୍କ ପକ୍ଷରେ ଯଦିଓ ସମ୍ଭବ ନ ଥିଲା ତଥାପି ଅଫିସରେ ଅତି ମାତ୍ରାରେ ହସର ରୋଳ ସୃଷ୍ଟି ହେଲେ ସେ ମଧ୍ୟ ଟିକିଏ ଓଠ ଚିପି ହସି ଦେଉଥିଲେ । ଅବଶ୍ୟ ତାଙ୍କର ଓଠ ଧାରରେ ହସଟା ବେଶ୍ ସୁନ୍ଦର ମାନୁଥିଲା ତାଙ୍କୁ ।

ଏ ସବୁ ସତ୍ତ୍ୱେ ଉପରି ପ୍ରତ୍ୟେକ ତିନି ତାରିଖ ସକାଳେ ସେ ହଠାତ୍ ପରିବର୍ତ୍ତିତ ହୋଇଯାନ୍ତି — ଏବଂ ତାଙ୍କର ମୁଖମଣ୍ଡଳ ଉପରେ ଅତିମାତ୍ରାରେ ଉତ୍‌ଫୁଲ୍ଲ ଦେଖାଯାଏ ଏହି ବିଷୟ ନେଇ ସମସ୍ତଙ୍କ ମନରେ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ ।

ମୁଁ ଅନେକ ସମୟରେ ଲକ୍ଷ୍ୟ କରେ, ଉକ୍ତ ଦିନଟିରେ ସେ ଏକ ପୁରୁଣା ନୋଟ୍ ଖାତା ବାହାର କରି ଏପଟ ସେପଟ ଲେଉଟାଇ-

ବାରେ ଲଗନ୍ତି । କିଛି ଖୋଜିବା ପରେ ଅତିଶୟ ବ୍ୟଗ୍ର ହୋଇ ଫାଇଲପତ୍ର ଘାଣ୍ଟି ଲଗନ୍ତି । କିଛି ସମୟ ପରେ ଖଣ୍ଡିଏ କାଗଜ ଟାଣି ଆଣି ଡଟ୍ ପେନ୍ ଧରି ଗାର କାଟି ଲେଖି ବସନ୍ତି । ସେଥିରୁ ଅନେକ ଅଂଶ ପୁରୁଣା ନୋଟ ବହିଟିରେ ଟିପି ରଖି ଅବଶିଷ୍ଟତକ ଠିକ୍ ଠିକ୍ କରି ଚିରି ପକାନ୍ତି ।

ଅଫିସରେ ସେଦିନ ସେ ବିଶେଷ କାମ କରି ପାରନ୍ତି ନାହିଁ । ଥରେ ହାକିମ ପଶି ଆସିବା ସମୟରେ ତାଙ୍କର ଏପରି ଅନ୍ୟମନସ୍କତା ଦେଖି ବିରକ୍ତ ପ୍ରକାଶ କରିଥିଲେ । ଏହାର ଫଳରେ ତାଙ୍କୁ ଇସ୍ତଫା ଦେବାକୁ ହୋଇଥିଲା । କିନ୍ତୁ ହାକିମ ଠିକଏ ଚିନ୍ତାଶୀଳ ଲୋକ ଥିଲେ । ଥରେ ଫାଇଲ ଗଦା ଭିତରେ ହାତ ଦେଲେ ନରହରି ବାବୁ ଯେ କର୍ତ୍ତବ୍ୟନିଷ୍ଠ ମଣିଷ ଭଲଆ ସବୁ କାମ ଶେଷ ନ କରି ଛାଡ଼ନ୍ତି ନାହିଁ, ସେ ଭଲ ଭାବେ ଜାଣିଥିଲେ । ସେଇ ହେତୁ ସେ ତାଙ୍କର ଇସ୍ତଫା ପତ୍ର ଫେରାଇ ଦେଇଥିଲେ ।

ଅନେକ ଥର ମୁଁ ଦେଖିଛି—ତାଙ୍କ ସାଇକଲ କେରିଅର୍‌ରେ ଦୁଇଖଣ୍ଡ ମଇଳା ବେଗ୍ ଓ ତା ଭିତରେ ଖୁବ୍ ସମ୍ଭବ ଗୋଟାଏ ବାଁଟା ଡାଲଡା ଟିଣ ପତ୍ରର ସହିତ ବନ୍ଧା ଯାଇଥାଏ । ସନ୍ଧ୍ୟା ପୂର୍ବରୁ ସେ ଗୁଡ଼ିକ ଯେ ପୂର୍ଣ୍ଣ ହୋଇ ଗୃହିଣୀଙ୍କ ନିକଟରେ ହାଜର କରାହେବ, ଏ ବିଷୟରେ ମୁଁ ନିଶ୍ଚିତ ଥାଏ । କାରଣ ଦିନଟା ଥାଏ ଦରମା ମିଳିବାର ଏକ ନିର୍ଦ୍ଦିଷ୍ଟ ତାରିଖ ।

ସେଦିନ ଆକସ୍ମିକ ଭାବରେ କୌଣସି ଏକ ପାରିବାରିକ ବିବାହ ପ୍ରସଙ୍ଗ ନେଇ ମୁଁ ନରହରି ବାବୁଙ୍କର ଗୃହାଭିମୁଖୀ ହେଲି । ତାରିଖ ବା ତିଥି ଲକ୍ଷ୍ୟ କରିବା ମୋ ପକ୍ଷେ ସମ୍ଭବ ନ ଥିଲା କାରଣ ଛୁଟିରେ ମୁଁ ଘରେ ବିଶ୍ରାମ ନେଇଥିଲି । ଦେହ ଅବଶ୍ୟ ଖରାପ ନ ଥିଲା । ହାକିମଙ୍କର ବ୍ୟବହାରରେ କ୍ଷୁର୍ଣ୍ଣ ହୋଇ ମନ ବଦଳାଇବା ପାଇଁ ଛୁଟିରେ ରହିଥାଏ । ଛୁଟି ଦରଖାସ୍ତଟା ଗ୍ରହଣଯୋଗ୍ୟ ହୋଇ ନ ଥିବାରୁ ମୁଁ ଏକ ଅନିର୍ଦ୍ଦିଷ୍ଟ ପରିସ୍ଥିତି ଭିତରେ ଗତି କରୁଥିଲି । ଟ୍ରଙ୍କରେ ଯୋଗ ଦେବା ପାଇଁ ବାପା ବୋଉଙ୍କ ପାଖରୁ ଘନ ଘନ ଚିଠି ଆସୁଥିଲା । ବାପାଙ୍କର ଟ୍ରଙ୍କରି

ନ ଥିଲି । ସମସ୍ତେ ମୋ ଦଳେମା ଉପରେ ନର୍ଭର କରୁଥିଲେ । ମୋ ତଳେ ଦୁଇଟି ଭଉଣୀ । ଅର୍ଥ ଅଭାବରୁ ସେମାନଙ୍କର ବିବାହ ହୋଇ ପାରୁ ନ ଥିବାରୁ ବାପା ସବୁବେଳେ ମୋ ଉପରେ ଦୋଷ ଲଦି ଦେଉଥିଲେ । ବାପା ବୋଉଙ୍କର ଅଶ୍ରୁପୂର୍ଣ୍ଣ ଚିଠି ସମୟେ ସମୟେ ମତେ ବ୍ୟସ୍ତ କରି ପକାଉଥିଲେ ମଧ୍ୟ ଅଧିକ ଟଙ୍କା ପଠାଇବା ମୋ ପକ୍ଷେ ସମ୍ଭବ ନ ଥିଲା ।

ମୋର ବିବାହ ହୋଇ ନ ଥାଏ । ଘରଟିଏ ଭଡ଼ା ନେଇ ମୁଁ ଏକୁଟିଆ ରହୁଥିଲି; ତଥାପି କ୍ଲାନ୍ତି ଜୀବନଟା କପରି ନିଃସଙ୍ଗ ମନେ ହେଉଥିଲା । ଅଫିସରୁ ଫେରିବା ପରେ ଘର ଝାଡ଼ିବା, ଶେଜ ପକାଇବା, ପାଣି ରଖିବା, ହୋଟେଲରେ ଖାଇବା ମୋ ପକ୍ଷେ ଦୁଃସହ ମନେ ହେଉଥିଲା । କାହାରି ଉପସ୍ଥିତି ଯେ ମୋ ପାଇଁ ଏକାନ୍ତ ପ୍ରୟୋଜନ— ଏହା ଦୀର୍ଘ ଦୁଇ ମାସ ଛୁଟିରେ ଥିବା ଭିତରେ ମୁଁ ଅନୁଭବ କଲି । କିନ୍ତୁ ଏ ଅନୁଭୂତିର ସାର୍ଥକତା ହୁଏତ ଏ ଜନ୍ମ ପାଇଁ ସମ୍ଭବ ନ ଥିଲା । କାରଣ ଭଉଣୀ ଦୁଇଟି ବିବାହ ନ ହେଲା ପର୍ଯ୍ୟନ୍ତ ମୋ ପ୍ରଶ୍ନ ଯେ ଉଠୁନାହିଁ, ଏ ବିଷୟରେ ମୁଁ ଭଲଭାବେ ଜାଣିଥିଲି ।

କୌଣସି ସୁନ୍ଦରୀ ତରୁଣୀ କିମ୍ବା ଚଳଚ୍ଚିତ୍ର ଜଗତର ନାୟିକାଙ୍କୁ ଦେଖିବା ପରେ ମୋର ମନରେ ଶିହରଣ ସୃଷ୍ଟି ହେଉ ନ ଥିଲା କହିଲେ ଭୁଲ ହେବ । ବନ୍ଧୁ ଗହଣରେ ବନ୍ଧୁମାନେ ବାନ୍ଧବୀଙ୍କୁ ନେଇ ସାନ୍ଧ୍ୟ ଭ୍ରମଣ କରୁଥିବା ବେଳେ ମୁଁ ଈର୍ଷାରେ ଅଭିଷ୍ଟ ହୋଇ ପଡ଼ୁଥିଲି । ମନ ଭିତରେ ଉଙ୍କି ମାରୁଥିବା ଏକ ଅଲୀହା ଭାବନା ମତେ ବିବ୍ରତ କରି ପକାଉଥିଲା ।

ଗାଁକୁ ଯିବାକୁ ମୁଁ ଭଲ ପାଉ ନ ଥିଲି । ବାପା ବୋଉଙ୍କର ଅଶ୍ରୁପୂର୍ଣ୍ଣ ଆଖି, ଭଉଣୀ ଦୁହିଁଙ୍କର ସମବେଦନାଭରା ମୁଖମଣ୍ଡଳ ମୋର ମନ ଭିତରଟାକୁ ଅହରହ ବେଦନା ଜର୍ଜରିତ କରି ପକାଉ ଥିଲା । ସେଇ ହେତୁ ଶକ୍ତ ବାସ୍ତବତାକୁ ମୁଁ ଆଦୌ ପସନ୍ଦ କରିପାରୁ ନଥିଲି । ସିନେମା ଦେଖିବା, ସାଙ୍ଗ ମେଳରେ ସହର ସାରା ଘୂରି ବୁଲିବା, ଚା ଓ ପାନ ଦୋକାନରେ ବସି କଲେଜ ତରୁଣୀଙ୍କ ବିଷୟରେ ଆଲୋଚନା କରିବା

ମୋର ଦୈନନ୍ଦିନ ଅଭ୍ୟାସ ପାଲଟି ଯାଇଥିଲା । ମୁଁ ଗୋଟାଏ ଆତ୍ମ-ଯୋଜନାବିହୀନ ଜନ୍ତୁ ଭଳି କମାକାର ଜୀବ ଭଳି ବଞ୍ଚିବାକୁ ଭଲ ପାଉଥିଲି ।

ନରହରି ବାବୁଙ୍କର ଜଣେ ଆତ୍ମୀୟଙ୍କ ସହିତ ମୋର ନିଜ ଭଉଣୀର ବିବାହ ପ୍ରସଙ୍ଗ ପକାଇବା ପାଇଁ ଥିଲି ବାପାଙ୍କର ତାଗଦା । ବାପା ଶୁଣିଥିଲେ ବର ପକ୍ଷରୁ କୌଣସି ଦାବି ନାହିଁ । ବିନା ଯୌତୁକରେ ଭଉଣୀଟିର ବିବାହ ଯଦି ହୋଇଯାଏ, ତେବେ ମୁଁ ବି ଟିକିଏ ଶାନ୍ତିରେ ନିଶ୍ୱାସ ମାରି ପାରିବି ।

ନରହରି ବାବୁଙ୍କ ଘରେ ପହଞ୍ଚିବା କ୍ଷଣି ଏକ କ୍ରନ୍ଦନ ରୋଳ ମୁଁ ଶୁଣି ପାରିଲି । ଗୃହିଣୀ ତାଙ୍କର କାନ୍ଦୁଥିଲେ । ମଝିରେ ମଝିରେ ଖିଷଣ ଭାବରେ ପାଟି କରି ଉଠୁଥିଲେ । ନରହରି ବାବୁ ସଁ ସଁ ହୋଇ କୌଣସି କାରଣରୁ ଗୃହିଣୀଙ୍କୁ ପ୍ରହାର କରୁଥିବାର ମୁଁ ଅନୁମାନ କଲି । ଦୀର୍ଘ ଦଶ ବର୍ଷ ଧରି ନରହରି ବାବୁଙ୍କର କ୍ରୋଧ ମୁଁ ଦେଖି ପାରି ନ ଥିଲି । ସେ କଣ ଏପରି କ୍ରୋଧାନ୍ଧ ହୋଇ ଶେଷରେ ବିବାହିତା ସ୍ତ୍ରୀଙ୍କୁ ପ୍ରହାର କରି ପାରନ୍ତି···?

ହଠାତ୍ ନରହରି ବାବୁ ଧଇଁସଇଁ ହୋଇ ବୈଠକ ଘର ଭିତରକୁ ପଶି ଆସିଲେ । ମୋର ଉପସ୍ଥିତିରେ ସେ ଟିକିଏ ଅପ୍ରତିଭ ମନେ କଲେ । ତାଙ୍କର ସମସ୍ତ କାର୍ଯ୍ୟକଳାପ ସମ୍ପର୍କରେ ଯେ ମୁଁ ଅବଗତ ହୋଇ ପାରିଛି, ତାହା ସେ ଅନୁମାନ କରି କହିଲେ—"ବୁଝିଲେ ପ୍ରଶାନ୍ତ ବାବୁ ! ଆପଣ ଢେର ସୁଖୀ । ସଂସାର ଚଳାଇବାକୁ ଯାଇ ଯାହା ତ କଷ୍ଟ ପାଇଲି ପାଇଲି, ସେଥିରେ କାହାରି ପାଖରୁ ସହାନୁଭୂତି ଟିକିଏ ପାଇଲି ନାହିଁ । ଟଙ୍କା ତ ପାଇବି କେଉଁଠି । ଏହି ମହଙ୍ଗା ସମୟରେ ପାଞ୍ଚଟା ଝିଆଙ୍କୁ ମଣିଷ କରିବା କଣ ସହଜ କଥା ? ଆଉ ଇଏ ସବୁବେଳେ କହୁଛନ୍ତି···ପାନ ଗୁଣ୍ଡା ଖାଇ ଛଅମେ ପଇସା ଉଡ଼ାଇ ଦେଉଛ— ଝିଅ କାପରି ବିବାହ ହେବ ଭାବୁନାହଁ । ଏ ଯୁଗରେ ଯୌତୁକ ଦେଇ ଜୋଇଁ କିଣିବା କଣ ମୋ ପକ୍ଷରେ ସମ୍ଭବ ?"

"ହଁ ହଁ, ତିନି ଚାରିଟି ଝିଅଟିକୁ ମାରି ଦେଉନ ? ପୋଷିବାକୁ ଯଦି କ୍ଷମତା ନ ଥିଲା, ଜନ୍ମ କରୁଥିଲ କାହିଁକି ? ପାନ ଖାଇ ପଙ୍ଖା ତଳେ ବସି

ଆଉ୍‌ ଆଉ ଜମାଇବାକୁ ପଇସା ଅଛି···ଏଣେ ମୁଁ ଯୁବକ ଝିଅଟାକୁ··· ଧିକ୍‌ ମୋ ଜୀବନ !" ଭିତରୁ ଘରୁ ଗୃହିଣୀ ଅଭିମାନ ଗଳାରେ ଉତ୍ତର ଦେଲେ ।

ନରହରି ବାବୁ ଅପେକ୍ଷାକୃତ ଟିକିଏ ଧୀର ଗଳାରେ ଗମ୍ଭୀର ହୋଇ କହିଲେ—"ଶୁଣିଲେ ? ଦରମା ତ ପାଇବ ଦେଢ଼ଶହ ଟଙ୍କା । ସେଥିରୁ ସଉଦା ଦୋକାନୀ ନେବ ଶହେ ଦଶ ଟଙ୍କା, ପୁଣି ଘରଭଡ଼ା କୋଡ଼ିଏ । କେତେ ଟଙ୍କା ଆଉ ରହିଲା ଯେ ପିଲେ ପାଠ ପଢ଼ିବେ—ମୁଁ ପାନ ଗୁଆ ଖାଇ ଉଡ଼ାଇ ଦେବି ? ମୋ ପିଲାମାନଙ୍କୁ ଭଲ ଖାଇବାକୁ ପିନ୍ଧିବାକୁ ଦେବା ପାଇଁ ମୋର କଣ ଆଗ୍ରହ ନାହିଁ ?···"

·· ସେ ଆଉ କିଛି କହି ପାରିଲେ ନାହିଁ । ବହୁଦିନର ପରିଚିତ ପୁରୁଣା ନୋଟ ଖାତାଟିକୁ ପକେଟରୁ ବାହାର କରି ମୋ ହାତକୁ ସେ ବଢ଼ାଇ ଦେଲେ ।

ଅଭାବ ଓ ଅନଟନ ଭିତରେ ମଣିଷର କପଟ ନଜର ରହେ ନା— ମନେ ମନେ ମୁଁ କଳନା କରିବାକୁ ଲାଗିଲି । ସାମାନ୍ୟ ଟଙ୍କା କେତେଟାର ହିସାବ ଭିତରେ ଏପରି ସନ୍ଦେହ କେତେ ଦୂର ଯୁକ୍ତିଯୁକ୍ତ ଭାବିବା ପୂର୍ବରୁ ବହୁ ରହସ୍ୟମୟ ପୁରୁଣା ଖାତାଟିକୁ କୌତୂହଳବଶତଃ ଲେଉଟାଇବାକୁ ଚେଷ୍ଟା କଲି ।···ପୃଷ୍ଠା ଗୁଡ଼ାକ ମୋ ଆଖି ସାମନାରେ ଜାଲୁଜାଲୁଆ ଦେଖାଗଲା । ମୋର ହାତର ପ୍ରତ୍ୟେକ ସ୍ନାୟୁ ଥରୁଥିଲା । ଛାତିର ସ୍ପନ୍ଦନ ବଢ଼ି ଯାଇଥିଲା ଦ୍ୱିଗୁଣ । ମୋ ଆଖି ଆଗରେ ସମଗ୍ର ଘରଟା ଘୂରିବାକୁ ଲାଗିଲା ।

ମୁହଁ ଫେରାଇ ଗୃହିଣୀ ନରହରି ବାବୁ ବସି କାନ୍ଦୁଥିଲେ । ତାଙ୍କର ଆବେଗର ମାତ୍ରା କ୍ରମଶଃ ବଢି ଚାଲିଲା, ଶେଷରେ ସେ କୋହ ସମ୍ଭାଳି ନ ପାରି କଇଁ କଇଁ ହୋଇ ଜୋରରେ କାନ୍ଦିବାକୁ ଲାଗିଲେ ।

ମୁଁ ବୁଝାଇବାକୁ ଚେଷ୍ଟା କରି ବିଫଳ ହେଲି । ତାଙ୍କର କାନ୍ଦର ସ୍ୱରରେ ମିଶି ରହିଥିଲା ବହୁ ଦିନର ସଞ୍ଚିତ ବେଦନାର ତରଙ୍ଗ । ହାତ ଦୁଇଟିକୁ ଧରି ଭିତର ଘରକୁ ଟିକିଏ ଆଗେଇ ନେଇ ଯାଇଥିଲି ।

ମାଟି ଘର ! ମାତ୍ର ଦୁଇଟି ବଖରା । ପିଲା ଦୁଇଟି ମଇଳା ଜାମା ପିନ୍ଧି କଣ୍ଟା ଚୁଡ଼ା ଚକ୍ତି ଗୋଟାଇ ଖାଇବାରେ ଲାଗିଥାନ୍ତି । କାନ୍ଥ ପାଖରେ ଠିଆ ହୋଇଥାଏ ଗୋଟିଏ ଦଶ ବାର ବର୍ଷର ଝିଅ । ଖଣ୍ଡେ ଦୂରରେ ଲଣ୍ଠନ ଜାଳି ଗୋଟିଏ ପୁଅ—ସମ୍ଭବତଃ ଅଷ୍ଟମ ଶ୍ରେଣୀରେ ପଢ଼ୁଥିବା ଭଳି ମନେ ହେଲା । ଗୃହିଣୀ ବସି କାନ୍ଦୁଥିଲେ । ତାଙ୍କର ହାତର ସମସ୍ତ କାଚ ଭାଙ୍ଗି ଯାଇଥିଲା । ଘର ମଝିରେ କେତେକ ଡାଲଦା ଟିଣ ଓ ଖାଲି ବୋତଲ୍ ଅସ୍ତବ୍ୟସ୍ତ ହୋଇ ପଡ଼ିଥିଲା ।

ସେତେବେଳେ ଘର କବାଟ ପାଖରେ ଠିଆ ହୋଇ ଆଖିରୁ ଲୁହ ପୋଛୁଥିଲା କୋଡ଼ିଏ ଏକୋଇଶ ବର୍ଷର ଜଣେ ତରୁଣୀ । ଏହି ଯେ ନରହରି ବାବୁଙ୍କର ବଡ଼ ଝିଅ, ତାହା ବୁଝିବା ମୋ ପକ୍ଷରେ ବାକି ନ ଥିଲା । ଝିଅଟି ଅତି ସୁନ୍ଦରୀ ନ ଥିଲେ ମଧ୍ୟ ବେଶ୍ ଲୋଭନୀୟ ଦେଖା ଯାଉଥିଲା । ମତେ ଦେଖି ଝିଅଟି କବାଟ ଆଡ଼ୁଆଳରେ ଲୁଚିଗଲା ।

ମୋର ଆଖି ସାମନାରେ ଭାସି ଉଠିଲା ତାର ବାହାଘର ତାଲିକା । ସେ ତାଲିକା ବହୁ ବର୍ଷ ଧରି ଲିପିବଦ୍ଧ ହୋଇ ଆସିଛି । ସର୍ବୋଚ୍ଚ ଦଶ ହଜାର ଟଙ୍କାରୁ କମି କମି ଆସିଛି ତିନିହଜାର ଟଙ୍କା ପର୍ଯ୍ୟନ୍ତ । ଏହାଠାରୁ ଆଉ ନିମ୍ନତର ତାଲିକା ପ୍ରସ୍ତୁତ ହୋଇ ନ ଥିଲା । ଦରମା ବାବଦରୁ ମାସ ପାଞ୍ଚୋଟି କିମ୍ବା ଦଶୋଟି ଟଙ୍କା ଅବଶିଷ୍ଟ ରହିବା ସତ୍ତ୍ୱେ ଜୀବନବ୍ୟାପୀ ସଞ୍ଚୟର ସୀମା ଉକ୍ତ ତାଲିକା ନିକଟରେ ପହଞ୍ଚିବା ପାଇଁ କେତେ ଯୁଗ ବିତିଯିବ ! ଏହା ଭାବିଲା ବେଳେ ମୋ ସାମନାରେ ଦୁନିଆଁଟା ଝାପ୍‌ସା ଝାପ୍‌ସା ଦେଖାଗଲା ।

ଆଖି ଆଗରେ ଭାସି ଆସିଲା ମୋର ଅଭାଗିନୀ ଭଉଣୀ ଦୁଇଟିର ଆକୁଳଭରା ଗୃହାଣୀ ! ପୁଣି ମନେ ହେଲା ମୋର ବାପା ବୋଉଙ୍କର ଅନ୍ତର୍ଦାହ, ସେମାନଙ୍କର ଅଶ୍ରୁପୂର୍ଣ୍ଣ ମୁଖମଣ୍ଡଳ !! ଆଉ ଅନ୍ୟ ପକ୍ଷରେ ବାସ୍ତବତା ସହ ଖାପଛଡ଼ା ହେଲାଭଳି ମୋର ବ୍ୟକ୍ତିଗତ ଜୀବନର ଅବଗତ ରହି ରହି ମତେ ଖଚେଇ ହେଲାପରି ଲାଗୁଥିଲା !!

ମୋର ସ୍ମୃତିରେ ବାରମ୍ବାର ଭାସି ଆସିଲା ମୋର ଘନିଷ୍ଠ ବନ୍ଧୁ ପ୍ରଶାନ୍ତର ବିବାହକାଳୀନ ସମସ୍ତ ଘଟଣା ! ତାର ସ୍ତ୍ରୀ ସୁନ୍ଦରୀ କିମ୍ବା ଶିକ୍ଷିତା ନ ଥିଲା । ଫଳରେ ବର ପକ୍ଷରୁ ବହୁ ପରିମାଣରେ ଯୌତୁକ ଦାବୀ କରାଗଲା । କିନ୍ତୁ କନ୍ୟା ପକ୍ଷରେ ଏହା ଦେବା ସମ୍ଭବ ନ ଥିବାରୁ ବେଦୀ ଉପରୁ ବରଯାତ୍ରୀ ଚାଲି ଯାଇଥିଲେ । କିଛିଦିନ ପରେ ଝିଅଟି ଆତ୍ମହତ୍ୟା କରି ଥିବାର ଗୁଜବ ଶୁଣା ଯାଇଥିଲା ।

ଅନ୍ୟ ପକ୍ଷରେ ପ୍ରଶାନ୍ତର ବାପା ତା ଭଉଣୀର ବିବାହ ପାଇଁ ବହୁ ଟଙ୍କା ଆନନ୍ଦର ସହିତ ଖର୍ଚ୍ଚ କରିଥିଲେ । ସମସ୍ତ ସମ୍ପତ୍ତି ଦେବା ପରେ ନଗଦ ଦଶ ହଜାର ଟଙ୍କା ଅଧିକ ଦେଇଥିଲେ । ତଥାପି ବର ପକ୍ଷରୁ ଅସନ୍ତୋଷର ସୀମା ନ ଥିଲା । ସ୍କୁଟର, ଟ୍ରାଂଜିଷ୍ଟର ଠାରୁ ଆରମ୍ଭ କରି ରେଫ୍ରିଜେରେଟର ଯାଏ ସବୁ କ୍ଷେତ୍ରରେ ଆପତ୍ତି ଶୁଣା ଯାଉଥାଏ । ଓଃ ! ଜୀବନ ପଥରେ ବିବାହଟା କେତେ ବଡ଼ ସମସ୍ୟା ସତରେ ? ?

ସମାଜ ପ୍ରତି ମୁଁ ବିଦ୍ରୋହୀ ହୋଇ ଉଠୁଥିଲି । ଯେଉଁ ସମାଜରେ ଧନୀ ପିତା ଝିଅର ବିବାହ ନିମନ୍ତେ ପଚିଶ ହଜାରରୁ ଲକ୍ଷେ ଟଙ୍କା ଆନନ୍ଦରେ ଖର୍ଚ୍ଚ କରି ପାରୁଛି—ସେ ଦେଶର ଲକ୍ଷ ଲକ୍ଷ ଗରିବ ପିତାଙ୍କର ଲୁହ ଲହୁରେ କିଣା ଯାଉଥିବା ଘଣ୍ଟା, ସାଇକେଲ, ରେଡ଼ିଓର ଦାବୀ ଯେ କିପରି ଆଧୁନିକ ଶିକ୍ଷିତ ଯୁବକ ପକ୍ଷରେ ଗ୍ରହଣୀୟ ହୋଇ ପାରୁଛି—ଏ କଥା ଭାବି ମନେ ମନେ ମୁଁ ଲଜ୍ଜିତ ହୋଇ ଯାଉଥିଲି ।

ମୋ ଆଖି ଭିତରେ କରୁଣତା ଓ ବିଦ୍ରୋହ ଭରା ଲୁହ ଟଳମଳ ହେବାକୁ ଲାଗିଲା । ଅଭାବ ଓ ଅନାଟନର ଏକ ଜ୍ୱଳନ୍ତ ତିକ୍ତ ଅନୁଭୂତି ମତେ ବ୍ୟଥିତ କରି ପକାଇଲା । ମୋର ଭଉଣୀ ଦିଓଟିର ଓ ନରହରି ବାବୁଙ୍କର ଯୁବତୀ ଝିଅର ବେଦନାଭରା ମୁଖମଣ୍ଡଳ ମନ-ମୁକୁରରେ ବାରମ୍ବାର ପ୍ରତିଫଳିତ ହେବାକୁ ଲାଗିଲା ।

ଖାତାଟିକୁ ଚଉକି ଉପରେ ଥୋଇ ଦେଇ ମୁଁ ନରହରି ବାବୁଙ୍କ ଘରୁ ବାହାରି ସାଇକେଲ ହେଣ୍ଡେଲ୍ ଉପରେ ହାତ ପକାଇଥିଲି । ସମୟ ନିର୍ଦ୍ଦିଷ୍ଟ କରିବା ମୋ ପକ୍ଷେ ସମ୍ଭବ ନ ଥିଲା···ମୋର ନିଃସଙ୍ଗ ପଥରେ ଦୋଳାୟମାନ ହେଉଥିଲା ନରହରି ବାବୁଙ୍କ ଝିଅର ଅସମ୍ଭାବ୍ୟ ବିବାହ ଖର୍ଚ୍ଚର ତାଲିକା ।



# ଝଡ଼ର ଶେଷ

ସୁରର ବୋହୂ ଆସିଛି । କେତେ ଘର ଅଣିଛି । ଛକ ପର୍ଯ୍ୟନ୍ତ ଘର ଲମ୍ବିଛି । ସମସ୍ତଙ୍କ ମୁହଁରେ ପ୍ରଶଂସା ଉଛୁଳି ପଡ଼ୁଛି । ଘର ସୁନ୍ଦରୀ ବୋହୂଟିଏ । ଗୋଟିଏ ଗୃଡ଼ଲରେ ଗଢା—ସୁନା ଝଡ଼କା ପରି । ରମାଦେବୀଙ୍କ ଗୋଡ଼ ତଳେ ପଡ଼ୁନା । ଉପର ଖଞ୍ଜାରୁ ତଳ ଖଞ୍ଜା ପର୍ଯ୍ୟନ୍ତ ଗହଳରେ ପଡ଼ୁଛି ଉଠୁଛି । ତାଙ୍କର ବୋହୂ ଆସିଛି ।

ତକିଆରେ ମୁହଁ ଗୁଞ୍ଜି କାନ୍ଦିବାକୁ ଲାଗିଲେ ଆରତି । ପେଟଟା ଅସ୍ୱାଭାବିକ ଭାବରେ ମନ୍ଥି ହେବାକୁ ଲାଗିଲା । ମୁଣ୍ଡର ଅଲଗା ବାଳଗୁଡ଼ିକ ଆତୁର ଜୋରରେ ଜାବୁଡ଼ି ଧରିଲେ ସେ ।

"ଆରେ କାନ୍ଦୁଛ କାହିଁକି ? ଆସ ବୋହୂକୁ ବନ୍ଦେଇବ । ତମକୁ ଖୋଜା ପଡ଼ୁଛି ।"—ସ୍ୱାମୀ ଅଜୟ ବାବୁ ଉଠାଇଲେ ଆରତିଙ୍କୁ ।

ଆହତ ସର୍ପିଣୀ ପରି ଗର୍ଜି ଉଠିଲେ ଆରତି । "ଚାଲିଯାଅ - ମୁଁ ସିଦ୍ଧ କହୁଛି । ସବୁ ତମର ନାହିଁ । ମୋର ଦୁନିଆରେ କେହି ନାହାଁ । ତମର ସମସ୍ତେ ଅଛନ୍ତି । ତମର ଘର, ତମର ଘରଜଣ, ତମର ପୁତୁରା, ତମର ପୁତୁରାବୋହୂ···"ମୁଣ୍ଡଟିକୁ ହଠାତ୍ ବାଡେଇ ଦେଲେ ଆରତି ।

"ଆରେ ଆରେ, ଇଏ କ'ଣ ? ଏମିତି ହୁଅନ୍ତି ନା ? ଶୁଭଘରେ ପୁଅର ଅମଙ୍ଗଳ ହେବ—ତୁମେ ତାକୁ ଜନ୍ମ ଦେଇଛ ପରା ?"

"ଏଁ ଏଁ କଣ କହିଲ ? ମୁଁ ତାକୁ ଜନ୍ମ ଦେଇଛି ? ହାଃ ହାଃ ! ହସି ଉଠିଲେ ଆରତି କି ବିକଟ ସେ ହସ ! ହସରେ ଯେପରି ଭରି ରହିଥିଲା କେତେ ବର୍ଷର ଜମାଟବନ୍ଧା ଅଭିମାନ ଆଉ କରୁଣତା !—ଥରି ଉଠିଲା ଅଜୟ ବାବୁଙ୍କର ଗୁପ୍ତ ଭିତରଟା — ସେ ମୁହଁ ଫେରାଇ ନେଲେ ।

ସୁରକୁ ସେ ଜନ୍ମ ଦେଇଛନ୍ତି ? କିଏ କହିବ ? ସମାଜ କହିବ, ସେ ରମାଦେବୀଙ୍କ ପୁଅ । ଦେବତା କହିବେ, ସେ ରମାଦେବୀଙ୍କ ପୁଅ । ଅଗ୍ନି

କହୁଚେ ସେ ରମାଦେବୀଙ୍କ ପୁଅ । ତାଙ୍କର ପୁଅ ନାହିଁ-ସେ ହେଉଛନ୍ତି ଆଣ୍ଠୁକୁଡ଼ୀ ;

ଆଖିରୁ ଲୁହ ପୋଛୁ ଦେଇ ଯେତେବେଳେ ସେ ଡାକନ୍ତି ସୂରକୁ- "ଆ, ଆରେ ବାପା, ପୋଡ଼ପିଠା କରିଛୁ ଖାଇବୁ ?" ସୂର ମନା କରିଦିଏ ! ବୋଉ ଦେଇଛି— ଆଉ ପିଠା ଖାଇଲେ ତାର ଝାଡ଼ା ହେବ । ସେ କାନ୍ଦ ପକାନ୍ତି ।

ସମୟେ ସମୟେ ଗୁଡ଼ିଆ ଭିତରଟା ଛଟ ପଟ ହୁଏ ସୂରକୁ ଜାବୁଡ଼ି ଧରିବା ପାଇଁ । ସୂର କିନ୍ତୁ ତାଙ୍କୁ ଦେଖିଲେ କାନ୍ଦ ଉଠେ । ଗୁଡ଼ିପିଡ଼ି ହୋଇ ଉଦାର ଖଞ୍ଜାକୁ ଚାଲିଯାଏ—ରମାଦେବୀଙ୍କୁ ଜାବୁଡ଼ି ଧରେ । ଆରତିଙ୍କ ମନ ବିଚଳିତ ହୋଇଉଠେ ।

ଭଲ ଗପ କହୁଟାଏ କମ୍ବା ଦାମିକା କଲମ ଖଣ୍ଡେ ହାତକୁ ବଢ଼ାଇ ଦେଲେ ସୂର ଏବେ ମଧ୍ୟ ନିଏନି ! ତା ପାଖରେ ୫୦ ଟଙ୍କିଆ ପେନ ଅଛି । ବାଜେ ଗପ ବହିଗୁଡ଼ାକ ସେ ପଢ଼େନି —ବୋଉ ଗାଳି ଦେବ । ଆରତିଙ୍କ କଣ୍ଠ ରୁଦ୍ଧ ହୋଇଯାଏ—ବୁକୁର କୋହ ବୁକୁରେ ଚାପି ଧରନ୍ତି ।

"ହଇଲୋ ଏ ଆରତି ! ଏଇଠି ବସିଛୁ କ'ଣ ମ ? ଚାଁଲ ଆ, ବୋହୂକୁ ବନ୍ଦାଇବୁ । ତୋ ପୁଅ, ତୋ ବୋହୂ; ତୁ ନ ଗଲେ ହେବ କେମିତି ?" ରମାଦେବୀ ଉଠାଇଲେ ଆରତିଙ୍କୁ ।

"ଏଁ ମୋ ପୁଅ, ମୋ ବୋହୂ ? କିଏ ସବୁ ସେମାନେ ? ନା, ନା ମୋର ପୁଅ ନାହିଁ- ମୋର ବୋହୂ ନାହିଁ । ମୋର ଏ ଦୁନିଆରେ କେହି ନାହାନ୍ତି, ମୁଁ ଯାଇ ପାରିବିନି, ଅପା ! ତମେ ଫେରିଯାଅ ।"

"ହଇହେ ଅଜୟ, ତମେ ମଧ୍ୟ ଏଇଠି ବସି ରହିଲ ! ଆରତିକୁ ଟିକିଏ ବୁଝାଇ ଦିଅ ! ସେ ନ ଗଲେ ଲୋକେ କ'ଣ କହିବେ ? ପୁଅ ବୋହୂ ବସି ରହିଲେ ଯେ !"

ଅଜୟ ବାବୁ କିଛି କହି ପାରିଲେ ନାହିଁ । ନୀରବରେ ତଳକୁ ମୁହଁ ପୋତି ଚାଲିଗଲେ ।

ରମାଦେବୀଙ୍କ ଆଖିରୁ ଦି'ଟୋପା ଲୁହ ଖସି ପଡ଼ିଲା । ଆରତି ବାସ୍ତବିକ୍ ଠିକ୍ କହୁଛି । ସେ ଯଦି ଆଜି ଆରତି ହୋଇଥାନ୍ତେ···ସେ

ମଧ୍ୟ ଠିକ୍ ଏଇଆ କହୁଥାନ୍ତେ । ସଂସାରରେ ସେ ଭୁଲ କରୁଛନ୍ତି । ଭଗବାନ ଯଦି ତାଙ୍କ କୋଳରେ ଖଣ୍ଡିଏ ଦେଇଥାନ୍ତେ··· ସୁରକୁ ଯଦି ସେ ଆଜି ଅନ୍ତପାଡ଼ ଜନ୍ମ ଦେଇଥାନ୍ତେ···??? ଆଖିରୁ ଲୁହ ପୋଛି ନେଇ ଧୀରେ ଧୀରେ ସେ ବାହାରି ଗଲେ ଉପର ଖଞ୍ଜାକୁ ।

ସୁର ଥିଲା ଆରତି ଦେବୀଙ୍କ ପୁଅ । ଏକୋଇଶା ଦିନ ଏମିତି କେତେ ଲୋକ ଜମା ହୋଇଥିଲେ, କେତେ ଉପହାର ଦେଇଥିଲେ । ବର୍ତ୍ତମାନ ସୁଦ୍ଧା କେତେ ପେଣ୍ଟ, ସାର୍ଟ, ଖେଳନା ଥୁଆ ହୋଇଛି ସୁଟକେଶରେ । ଅଜୟ ଓ ଆରତିଙ୍କର ଆଦରର ସଖାଳି ହୋଇଥିଲା ସୁର । ଆରତି ସେଦିନ ଭାବୁଥିଲେ – ତାଙ୍କ ପୁଅ ଏମିତି ଡାକ୍ତର ହେବ–– ଏମିତି ସୁନାଖଡ଼ିକା ପରି ବୋହୂ ଆଣିବ । ଘର ଥୋଉରେ ଘର ଭର୍ତ୍ତି ହୋଇଯିବ । ଚଉକି ଉପରେ ଗୋଡ଼ ଦେଇ ସେ ବସିବେ, ବୋହୂ ପରଷି ଖାଇବେ ।

ଦଶ ମାସ ଗର୍ଭରେ ଧରି ସୁର ପାଇଁ କେତେ କଷ୍ଟ ସେ ପାଇଛନ୍ତି । ସୁରର ହସଖେଳରେ ସେ ଆତ୍ମବିଭୋର ହୋଇ ପଡ଼ନ୍ତି । ଆଠ ମାସ ପର୍ଯ୍ୟନ୍ତ କେତେ ସର୍ବାଙ୍ଗରେ ବଢ଼େଇ ଥିଲେ ତାକୁ । ସମୟ ସମୟରେ ମନେ ପଡ଼ିଯାଏ ଅତୀତର ସ୍ମୃତି । ଏକୁଟିଆ ଘରଟା ଖାଇ ଗୋଡ଼ାଏ, ମନଟା ବିକଳ ହୋଇ ଉଠେ ।

ଏମିତି ମଧ୍ୟ ରମା ଦେବୀ ସେଦିନ କାନ୍ଦୁଥିଲେ ।

ବିବାହର ୧୦ ବର୍ଷ ପରେ ସୁଦ୍ଧା ପୁଅ କି ଝିଅ ନ ହେବାରୁ ରମା ଦେବୀ ନିରାଶ ହୋଇ ପଡ଼ିଥିଲେ । ସ୍ୱାମୀ ଅକ୍ଷୟବାବୁ ଏକୁଟିଆ ବସିଲେ କମ୍ରା କାନ୍ଥରେ ଟଙ୍ଗା ହୋଇଥିବା କୌଣସି ଛୁଆ ଫଟୋ ଦେଖିଲେ କାନ୍ଦି କାନ୍ଦନ୍ତି । ରମା ଦେବୀ ବର୍ଷ ବର୍ଷ ଧରି କେତେ ଚେଷ୍ଟା କଲେ କୋଳରେ ଖଣ୍ଡିଏ ଧରିବେ ବୋଲି । କେତେ ବ୍ରତ, କେତେ ଉପବାସ, ଚେରମୂଳ, ଡାକ୍ତର, ବୈଦ୍ୟ ସବୁ ସରିଗଲା––ଶେଷରେ ଡାକ୍ତର ମନା କରିଦେଲେ ତାଙ୍କର ଆଉ ଛୁଆ ହେବନି ।

ଅଜୟବାବୁ ଭାଇଙ୍କ ଦୁଃଖ ସହ୍ୟ କରି ପାରି ନ ଥିଲେ ସେ ଦିନ–– ଯେଉଁ ଦିନ ରମା ଦେବୀ ଓ ଅକ୍ଷୟ ବାବୁ ଲୁହଭରା ଆଖିରେ ହାତ ପାତିଲେ ସୁରକୁ ପୁଅ କରିବା ପାଇଁ ।

"ଅଜୟ ମତେ ସୁରକୁ ଦେଇଦେ । ମୋ ଘର ଆଲୁଅ ହେବ । ଭଗବାନ ପୁଣି ତତେ ଦେବେ । ମୋର କନ୍ଥ ଆଉ ହେବନ ।" ସେତେବେଳେ ଆରତିଙ୍କର ପୁଣି ସନ୍ତାନ ହେବାର ସମ୍ଭାବନା ଥାଏ । ରକ୍ତର ଭାଇ ଆଖିରେ ଲୁହ ଦେଖି ଅଜୟବାବୁ ବିଚଳିତ ହୋଇ ପଡ଼ିଥିଲେ । ମାନବିକତା ଦୃଷ୍ଟିରୁ ସୁରକୁ ସେ ଦେଇ ଦେଇଥିଲେ ଭାଇଙ୍କ ହାତରେ ।

ଆରତିଙ୍କ ମାତୃ ହୃଦୟ ବିଦ୍ରୋହୀ ହୋଇ ଉଠୁଥିଲା । କିନ୍ତୁ ସେ ମଧ୍ୟ ବିବେକ ଆଗରେ ହାର ମାନିଥିଲେ ସେ ଦିନ !! ଗୋଟିଏ ପରିବାରକୁ ଖୁସି କରିବା ଗୌରବରେ ନିଜର ସ୍ୱାର୍ଥକୁ ଅତି କଷ୍ଟରେ ତ୍ୟାଗ କରି ପାରିଥିଲେ ସେ !!

ଯେତେବେଳେ ରମା ଦେବୀ ହସି ହସି ଆରତିଙ୍କ କୋଳରୁ ସୁରକୁ ନେଇଗଲେ କୋରାପୁଟ – ଆରତିଙ୍କ ଛାତି ଭିତରେ କିଏ ଯେମିତି ହାତୁଡ଼ି ଧରି ବାଡ଼େଇ ଲାଗିଲା । ଆଖିରୁ ବୋହି ଯାଉଥିଲା ଅଜସ୍ର ଲୁହ । ପାଞ୍ଚ ଦିନ ଧରି ସେ ଶେଯରୁ ଉଠି ନାହାନ୍ତି । ଜ୍ୱର ହୋଇଛି । ବହୁତ ଯନ୍ତ୍ରଣା ସେ ପାଉଛନ୍ତି ।

ଘରେ ବାହାରେ ପ୍ରତିଧ୍ୱନିତ ହେଉଛି—ସୁରର କିରିକିରି ହସ ଓ ଅବୁଝା କାନ୍ଦ । ବୋଉ ଡାକ । ଆରତିଙ୍କର ଆଖି ପତା ଦେଇ ଭାସିଯାଉ ଥାଏ ସୁରର ଝୁମ୍ପୁର ଝାମ୍ପୁର ବାଳ, ଟିକି ଟିକି ହାତ, କୁନି କୁନି ଆଙ୍ଗୁଠି । ଛାତି ଭିତରେ ସେ ଯେପରି ଅନୁଭବ କରି ଲାଗନ୍ତି—ଟିକି ପାଟିର ନରମ ସ୍ପର୍ଶ !!

ପେଣ୍ଟ, ଜାମା, ମୁତକନ୍ଥା ସେମିତି ଥୁଆ ହୋଇଛି । ଖେଳନା ଗଦା ହୋଇଛି । ଦୁଧ ବୋତଲ ଥୁଆ ହୋଇଛି । ଦୋଳିଟା ଖାଲି ପଡ଼ିଛି । ଘର ଖାଲି; କୋଳ ଖାଲି, ତାଙ୍କ ପାଇଁ ଦୁନିଆଟା ଖାଲି ହୋଇ ଯାଇଛି !!

ହଠାତ୍ ଆରତି ଦେବୀ ଉଠି ପଡ଼ନ୍ତି ଶେଯରୁ । ତାଙ୍କୁ ଜଣାପଡ଼େ —ସୁର ଗୁରୁଣ୍ଡି ଗୁରୁଣ୍ଡି ଚାଲି ଆସୁଛି । ଲୁହଭିଜା ଆଖିରେ କହୁଛି— "ଏ ବୋଉ, ମୋତେ ନେଇ ଯା ।" ସୁରର କାନ୍ଦ ଯେପରି ସେ ଅତି ନିକଟରେ ଶୁଣି ପାରୁଛନ୍ତି । ଘରଗୁଡାକ ଧଡ଼୍‌ଧାଡ଼୍ ଖୋଲି ପକାନ୍ତି । କୁଆ

ମୂଳକୁ ଚାଲି ଯାଆନ୍ତି । ସବୁଆଡ଼େ ସେ ଯେପରି ଅନ୍ଧାର ଲାଗନ୍ତି ।—ଛାତି ଭିତରୁ ବାହାରି ଆସେ ଉଷୁମ ଦୀର୍ଘଶ୍ୱାସ ! ତାଙ୍କର ଯେପରି ମନେହୁଏ, ସୁରକୁ ସେ ତଡ଼ି ଦେଇଛନ୍ତି । ସୁର ଅଭିମାନ କରି ଚାଲିଯାଇଛି ବହୁ ଦୂରକୁ । ସତରେ ସେ ଭୁଲ କରିଛନ୍ତି । ସ୍ୱାମୀ ଉପରେ ସବୁ ଦୋଷ ଲଦି ଦେଇ ସେ ଖାଲି କହିଁ କହିଁ ହୋଇ କାନ୍ଦି ଉଠନ୍ତି ।

ସମୟେ ସମୟେ ଭବିଷ୍ୟତର ସନ୍ତାନ ଆଶା ମନକୁ ସାନ୍ତ୍ୱନା ଦିଏ । କିନ୍ତୁ ନିକକ ଆଶା ହତାଶାରେ ପରିଣତ ହୁଏ--ଯେଉଁଦିନ ଆରତିଙ୍କର ପେଟ ଅପରେସନ ହୋଇ ମଲାଛୁଆ ଜାତ ହୁଏ ମେଡ଼ିକାଲରେ । ବହୁ ଦିନ ଆଗରୁ ଛୁଆଟା ମରିଯିବା ଫଳରେ ଗର୍ଭାଧାର ଚରି ନଷ୍ଟ ହୋଇଥିଲା । ଅପ୍ରୋପଚାର ହୋଇ ନ ଥିଲେ ଆରତି ଦେବୀ ଇହଜଗତରେ ନ ଥାନ୍ତେ ।

ଭାଗ୍ୟ ନିକଟରେ ମଣିଷ ହାରି ମାନେ । ଅଜୟ ବାବୁଙ୍କ ଅନୁତାପ ଦିନକୁ ଦିନ ବଢ଼ିବାକୁ ଲାଗିଲା । କିଏ କହି ଆରତିକୁ ସାନ୍ତ୍ୱନା ଦେବେ ?

ଆରତିଙ୍କ ସନ୍ତାନ କାମନା ମଉଳି ଆସିଲା । ସେ ଜାଣିଲେ—ଏ ଜନ୍ମରେ ତାହା ଆଉ ହୋଇ ପାରିବନି । ସେହି ଦିନଠାରୁ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଭଲ କଥାବାର୍ତ୍ତା ହୁଏ ନାହିଁ । ଅଜୟବାବୁ ବୁଝାଇ ବସିଲେ ଆରତିଙ୍କର ଶୁଣିବାକୁ ଆଉ ଧୈର୍ଯ୍ୟ ନ ଥାଏ । ସ୍ୱାମୀଙ୍କୁ ଦୋଷୀ କରି ସେ ଖାଲି କାନ୍ଦନ୍ତି—ନଚେତ୍ ତମତମ ହୋଇ ଉଠି ଚାଲି ଯାଆନ୍ତି ।

ପ୍ରତିବର୍ଷ ରମା ଦେବୀ ଗାଁକୁ ଆସିଲେ ସୁର ତାଙ୍କ ସାଙ୍ଗରେ ଆସିଥାଏ । ସୁରକୁ ପାଖରେ ଖାଇବାକୁ ଦେଇ ରମାଦେବୀ ଚର୍ଚ୍ଚା କରି ଲାଗନ୍ତି ।

ଆରତି ଧୀରେ ଧୀରେ ଯାଇ ଏକ ଲଫ୍ଟରେ ଚାହିଁ ରହନ୍ତି । ସୁର କିନ୍ତୁ ତାଙ୍କୁ ଦେଖିଲେ ଲାଜରେ ଉଠ ଚାଲିଯାଏ । ରମାଦେବୀ ସୁରକୁ ଅତି ଆଦର କରି ଡ଼ାକନ୍ତି । ସାର୍ଟରେ ବୋତାମ ଲଗାଇ ଦିଅନ୍ତି । ଜୋତା ପଲିସ୍ କରି ଦିଅନ୍ତି, ମୋଜା ପିନ୍ଧାଇ ଦିଅନ୍ତି । କେତେ ଗେଲ କରନ୍ତି— ଆରତିଙ୍କର ଛାତି ଫାଟିଯାଏ । ଇଚ୍ଛା ହୁଏ ସେ ଯାଇ ସୁରକୁ କହି ଦିଅନ୍ତେ କି—"ସେ ତୋ ବୋଉ ନୁହେଁରେ ମୁଁ ତୋ ବୋଉ ।" କିନ୍ତୁ ସେ

କହି ପାରନ୍ତିନି । ପ୍ରାଣ କାନ୍ଦି ଉଠେ । ନା, ନା, ସୁରି ମନରେ ହୁଏତ ଝଡ଼ ଦେଖାଦେବ । ରମାଦେବୀଙ୍କ ନିକଟରେ ନିଜକୁ ହୁଏତ ପର ମନେ କରିବ । ରମାଦେବୀଙ୍କର ମାତୃତ୍ୱରେ ହୁଏତ ପରିବର୍ତ୍ତନ ଦେଖାଦେବ । ନା···ନା···ସୁରି ସୁଖରେ ଥାଉ । ସ୍ୱାର୍ଥତ୍ୟାଗ ହିଁ ତାଙ୍କର ଗୌରବ ।

ସମୟେ ସମୟେ ସେ ମନକୁ ସଜାଡ଼ି ପାରନ୍ତିନି—ତାଙ୍କର ପ୍ରାଣ କାନ୍ଦି ଉଠେ । ଥରଟିଏ ପାଇଁ ଅନ୍ତତଃ ସେ ବୋଉ ଡାକ ଶୁଣନ୍ତେ ?? କେତେ ଆଶା ମନରେ ଭରି ସେ ଯାଆନ୍ତି ସୁରି ପାଖକୁ । କିନ୍ତୁ ମମତାହୀନ "ଖୁଡ଼ୀ" ଡାକରେ ସେ ଚହଲିତ ହୋଇପଡ଼ନ୍ତି । ହଠାତ୍ ଘରକୁ ଫେରି ଆସନ୍ତି । ପିଲାଦିନର ସୁରିର ଫଟୋଟିକୁ ଚାହିଁ ରହନ୍ତି । ସୁଟକେଶ୍ ଖୋଲି ପକାନ୍ତି, ଖେଳନା, ସାଟ, ଦୁଧ ବୋତଲଟିକୁ ତଳକୁ କାଢ଼ି ଗଦା କରି ଦିଅନ୍ତି । ପୁଣି କାନ୍ଦି ଉଠନ୍ତି କଇଁ କଇଁ ହୋଇ । ତକିଆରେ ମୁଣ୍ଡ ଗୁଞ୍ଜି ସେ ପଡ଼ିଯାଆନ୍ତି ଖଟ ଉପରେ ।

ଘରକୁ ଆସିଲେ ଅଜୟବାବୁ ଦେଖନ୍ତି—ଆଖିରେ ତାଙ୍କର ଲୁହ ଭରିଯାଏ । ସେ ବୁଝି ପାରନ୍ତି ଆରତିଙ୍କ ହୃଦୟର ବ୍ୟଥା—କିନ୍ତୁ ସେ ନିରୁପାୟ । ଖେଳନାଗୁଡ଼ିକ ସୁଟ୍‌କେଶ୍‌ରେ ଭର୍ତ୍ତି କରି ସେ ବନ୍ଦ କରି ପକାଇ ଦିଅନ୍ତି । କିନ୍ତୁ ତାଙ୍କର ହାତ ଯାଏନି ସେ ସମସ୍ତ ସ୍ମୃତି ସାମଗ୍ରୀ ପାଣିରେ ଫିଙ୍ଗି ଦେବା ପାଇଁ । କାରଣ ତାଙ୍କର ମଧ୍ୟ ପିତୃ ହୃଦୟ ବ୍ୟାକୁଳ ହୋଇ ଉଠେ ସମୟେ ସମୟେ । ସୁରିକୁ ଦେଖିଲେ ସେ ମଧ୍ୟ ଛଟପଟ ହୁଅନ୍ତି ।

ରମାଦେବୀ କିନ୍ତୁ ସୁରିକୁ ଭାରି ଆଦରରେ ରଖିଥାନ୍ତି । ସମସ୍ତ ଅଳି ଅର୍ଝଟ ସୁରି ତାଙ୍କ ପାଖରେ କରେ । କକା-ଖୁଡ଼ୀଙ୍କର ଖାପଛଡ଼ା କଥା ଯୋଗୁଁ ସେ ତାଙ୍କ ପାଖ ପଶେନି ।

ଅଜୟବାବୁ ସୁରିକୁ ସାମନାରେ ଦେଖିଲେ ପାଠପଢ଼ା ବିଷୟରେ ଦି'ପଦ ପଚାରି ଦିଅନ୍ତି—ବେଶ୍ ସେତିକି ! ଆରତି କେବଳ ସୁରି ମୁହଁକୁ ପଲକହୀନ ଆଖିରେ ଚାହିଁ ରହନ୍ତି—କିନ୍ତୁ କିଛି ପଚାରି ପାରନ୍ତିନି—ଚାଲି ଆସନ୍ତି ।

ବିଶେଷତଃ ଅକ୍ଷୟବାବୁଙ୍କର ଡ. ଏଫ୍.ଓ ବୃତ୍ତିଲାଭ ଯୋଗୁଁ ସେ ସବୁ-
ବେଳେ ସୁରଙ୍କୁ ନେଇ ବାହାରେ ବୁଲନ୍ତି । ଅଜୟବାବୁ କିନ୍ତୁ ବେଶୀ ପାଠ
ପଢ଼ି ପାରିଲେ ନାହିଁ—କାରଣ ବାପା ମରିଯିବାରୁ ଚାଷ ଜମି ଉପରେ
ତାଙ୍କର ନଜର ପଡ଼ିଲା । ସେ ଆଇ. ଏ. ପଢ଼ା ଛାଡ଼ି ହଳଦିଆ ଗାଁ ଜମିର
ଭାର ନେଲେ । ଦୁଇ ଭାଇଙ୍କର ଜମି ଅଲଗା । କିନ୍ତୁ ସବୁ ଚାଷ ଅଜୟ
ନିଜେ କରନ୍ତି— ଆଦାୟ ସରିଲେ ଭାଗ ହୁଏ ।

ସୁର ଯେତେବେଳେ କଲେଜରେ ଏମ୍. ବି. ବି. ଏସ୍. ପଢ଼ୁଥାଏ—
କାକାଖୁଡ଼ୀଙ୍କ ପାଖକୁ ଚିଠି ଲେଖେ, ହଷ୍ଟେଲରେ ସେ ଭାରି କଷ୍ଟରେ
ପଢ଼ୁଛି—ଶୁଖିଲା ବଗଡ଼ା ଭାତ ଖାଉଛି, ତାକୁ ଜମା ଭଲ ଲାଗୁନି । ଆରତି
କାନ୍ଦି ପକାନ୍ତି । ଅଜୟଙ୍କ ମୁହଁ ଶୁଖିଯାଏ । ସାରା ବର୍ଷ ଧରି ସେ ଅପେକ୍ଷା
କରିଥାନ୍ତି ସୁର କେତେବେଳେ ଗାଁକୁ ଆସିବ । ତା ପାଇଁ ଆମ୍ବ ଆଚାର,
ତେନ୍ତୁଳି ଆଚାର, ସରୁ ଚାଉଳ ପୁଞ୍ଜାଏ ସାଇତି ରଖନ୍ତି—ସୁର ଆସିଲେ
ଖାଇବ ।

କିନ୍ତୁ ସୁର ଗାଁକୁ ଆସିଲେ ସବୁ ଯେମିତି ଗୋଳମାଳ ହୋଇଯାଏ ।
କାରଣ ରମାଦେବୀ ମଧ୍ୟ ତାଙ୍କ ସାଙ୍ଗରେ ଆସିଥାନ୍ତି । ତାଙ୍କର ବେଶ
ପୋଷାକ, ଇଂରାଜୀ ଚଳଣି ଦେଖିଲେ ଆରତିଙ୍କର ମନ ମରିଯାଏ । ସେ
ନିଜକୁ ଅତି ଗୋଟିଏ ମନେ କରନ୍ତି ରମାଦେବୀଙ୍କ ନିକଟରେ ।

ଅଜୟବାବୁ କିନ୍ତୁ ଭାରି ଖୁସି ହୁଅନ୍ତି ସୁରଙ୍କୁ ଦେଖିଲେ—
ବିଦେଶରେ ରହି ପୁଅ ଭାଇଙ୍କ ପରି ବଡ଼ ହେବ । ସେ ସିନା ପଢ଼ି
ପାରିଲେନି, ପୁଅ ଭାଇଙ୍କଠାରୁ ବେଶି ପଢ଼ିବ । ହାତୀ ବନସ୍ତରେ ଥିଲେ
ରଜାଙ୍କର । ତାଙ୍କର ପୁଅ କିଏ, ଭାଇଙ୍କ ପୁଅ କିଏ ? ସମୟେ ସମୟେ
ଆରତି ଦେବୀଙ୍କ ଆଖିରେ ଲୁହ ଦେଖିଲେ ସେ ବିବ୍ରତ ହୋଇପଡ଼ନ୍ତି ।

ଆରତି ପ୍ରତିବର୍ଷ ଅପେକ୍ଷା କରିଥାନ୍ତି—ସୁର ଆଗ ଗାଁକୁ ବୁଲି
ଆସନ୍ତା କି ? ସେ ତାର ମୁହଁରୁ ଖାଲି ପୋଛି ଦେଇ ପଙ୍ଖା କରି ଦିଅନ୍ତେ ।
ଦିନୁଟିଏ ପାଇଁ ସୁରଙ୍କୁ ପାଖରେ ବସାଇ ଏକୁଟିଆ ଖାଇବାକୁ ଦିଅନ୍ତେ ।
ସୁର ଭୁଲରେ ତାଙ୍କୁ 'ବୋଉ' ବୋଲି ଡାକି ଦିଅନ୍ତା । ତାଙ୍କ ପଣତ

କାନରେ ଧ୍ୱନି ହାତଟିକୁ ଟେପିଛି ଦଉଡ଼ା । କନ୍ତୁ— ତାଙ୍କର ଆଶା ଆଶାରେ ହିଁ ମରିଯାଏ··· । ସେ ଖାଲି ଛଟପଟ ହୁଅନ୍ତି······ ।

× × × ×

ଆରତ୍ତ ସତରେ ଛଟପଟ ହେବାକୁ ଲାଗିଲେ । ନବବଧୂର ନୁପୂର ଧ୍ୱନି ଘର ଗୃହଆଡ଼େ ଯେପରି ପ୍ରତିଧ୍ୱନିତ ହେବାକୁ ଲାଗିଲା । ନା, ନା ସେ ଯିବେନି । ବୋହୂ ତାଙ୍କର ନୁହେଁ । ସେ ରମା ଦେବୀଙ୍କ ବୋହୂ । ଘର ଆଣିଛି—ଆଣୁ । ସେଥିରେ ତାଙ୍କର ଯାଏଆସେ କେତେ ? ସେ କେବଳ ପାଇବେ ଖଣ୍ଡିଏ ଶାଢ଼ୀ । ବୋହୂ ରମା ଦେବୀଙ୍କ ପାଖରେ ରହିବ । ଚଉକି ଉପରେ ଗୋଡ଼ ଥୋଇ ରମାଦେବୀ ବୋହୂ ପରଶା ଖାଇବେ, ସେ କାହିଁକି ଯିବେ ? ସେ ଯିବେ ନି ।

ହୁଳହୁଳି ଆଉ ଶୁଭୁନି । ବରକନ୍ୟାଂକ ବନ୍ଦାପନା ସରିଲାଣି ବୋହୂ ଟିକିଏ ମୁଣ୍ଡିଆ ମାରିବାକୁ ମଧ୍ୟ ଆସିଲାନି । ସୂର୍ଯ୍ୟ ଆସି ଥରୁଟିଏ ଡାକ ଦେଇଥିଲେ ସେ କଣ ଯାଇ ନ ଥାନ୍ତେ । ସେ ମଧ୍ୟ ଡାକିଲା ନାହିଁ । ତାଂକର ଯିବା ଆଉ ଦରକାର ପଡ଼ିଲା ନାହିଁ । ତାଂକର ପୁଅ ନାହିଁ ! ଦୁନିଆରେ ତାଂକର କେହିନାହିଁ । ସେ ଯିବେନି !

"ବାଉ ! ଏ ବୋଉ ! ବୋଉ ମ !"

ଆରତ୍ତିଂକ ଶିରପ୍ରଶିରରେ ଜଡ଼ିତ ବେଗରେ ଛୁଟି ଆସିଲା ଉଦ୍‌ବେଳ ଅନନ୍ତ ଝଂକାର । କାହାର—କାହାର ଏ କଣ୍ଠ ?— "ଏଁ କିଏ ଡାକୁଛି ? ମୁଁ କାର ବୋଉ—କିଏ ମୋ ପୁଅ ? ଡାକିଲୁ ଡାକିଲୁ ବାପ ଆଉଥରେ ଡାକିଲୁ ।"

"ବୋଉ !"—ସ୍ୱର ଭାସି ଆସିଛି । ବୋଉ, ତୁ ଏତେ ଧନ ଧରି ମତେ ଲୁଚେଇଥିଲୁ ? ମୁଁ ତୋ ସୂର । ମୁଁ ଫେରି ଆସିଛି

ବୋଉ ।" ସୁରର କଣ୍ଠରୁଦ୍ଧ ହୋଇ ଆସିଲା ।

ଏଁ ସୁର ଆସିଛୁ ?" ରମା ଦେବୀ ଉଠି ପଡ଼ିଲେ ଉଦ୍ଦାମ ଆଗ୍ରହର ଆତିଶଯ୍ୟ ନେଇ । କିନ୍ତୁ ସେହି ନିଷ୍ପ୍ରଭ ଲୁହ ଜାଲୁ ଜାଲୁ ଆଖି ଆଗରେ ହଠାତ୍ ଯେମିତି ରମାଦେବୀଙ୍କର ଆହତ-ମାତୃତ୍ୱ ମଳିନ ମୁଖ ଭାସି ଆସିଲା—ଯେମିତି ସେ ମୁହୂର୍ତ୍ତରେ ରମାଦେବୀ ସବୁ କିଛି ହାରି ବସିବେ ! ଆଃ...............

"ନା-ନା-ସୁରର ମୁଁ ବୋଉ ନୁହେଁ—ସୁର ମୋ ପୁଅ ନୁହେଁ—ସେ ଡ଼.ଏମ୍. ବାବୁଙ୍କ ପୁଅ—ରମାଦେବୀଙ୍କ ପୁଅ- ମୁଁ ତାର ଖୁଡ଼ୀ।"

ଆରତି ସଂଜ୍ଞାହୀନ ହୋଇ ପଡ଼ିଗଲେ ଖଟ ଉପରୁ । ନବଦମ୍ପତିଙ୍କର ଆଖିରୁ ଝରି ଆସିଥିଲା ଅଜସ୍ର ଲୁହ । କିନ୍ତୁ ଆରତିଙ୍କର ଚେତା ଆଉ ଫେରି ନ ଥିଲା ।

———